ଭାବ ସମୁଦ୍ର

ଡକ୍ଟର ରଣଜିତ୍ ପଣ୍ଡା
ଓଡ଼ଙ୍ଗ, ବାରବାଟୀ, ଧର୍ମଶାଳା, ଯାଜପୁର, ଫୋନ୍: ୮୦୧୮୧୬୬୨୭୮

ପ୍ରକାଶକ : କୃଷ୍ଣା
ଜାରକା, ଧର୍ମଶାଳା, ଯାଜପୁର, ଫୋନ୍:- ୯୨୩୮୫୧୯୮୧୫
ପ୍ରଥମ ସଂସ୍କରଣ : ୨୦୨୧-ନଭେମ୍ବର-୧୨- ଅଁଳା ନବମୀ
ମୂଲ୍ୟ : ଟ୧୫୦/

---

# BHABA SAMUDRA

BY

Dr. Ranjit Panda
Odanga, Barabati, Dharmasala, Jajpur, Ph. 8018166278

**Published by:** KRUSNA
Jaraka, Dharamasala, Jajpur, Ph: 9238519815
**Mail ID.** krusnadtp@gmail.com
**First Edition :** 2021-November-12- **Analanabamee**
**Price-** Rs. 150/

ISBN. 9789393178046




ମୋର ପରମ ଅରାଧ୍ୟ ପିତା ୰ ଶ୍ରୀ ରୁଦ୍ରଚରଣ ପଣ୍ଡା
ଓ ମାତା ଶ୍ରୀମତୀ କ୍ଷୀର ପଣ୍ଡାଙ୍କ କରକମଳରେ ଏହି
ପୁସ୍ତକ ଖଣ୍ଡିକ ଉତ୍ସର୍ଗ କରି ନିଜକୁ ଧନ୍ୟ
ମନେକରୁଛି ।






# ଅଭିମତ

ଡଃ ରଣଜିତ ପଣ୍ଡାଙ୍କ ରଚିତ ପ୍ରବନ୍ଧ ପୁସ୍ତକ 'ଭାବସବୁଦ୍ର'ରେ ସଂପୂଟିତ ପ୍ରବନ୍ଧଗୁଡ଼ିକ ପୂର୍ବରୁ ବିଭିନ୍ନ ପତ୍ରିକାରେ ପ୍ରକାଶିତ ହୋଇ ତତ୍‌ସମ୍ବନ୍ଧୀୟ ପାଠକୀୟ ଆଦୃତି ଲାଭ କରିଛି । ସେଗୁଡ଼ିକୁ ଏକତ୍ର କରି ପୁସ୍ତକ ଆକାରରେ ପ୍ରକାଶ କରିବାରେ ଏବେ ସେ ପ୍ରୟାସୀ ହେବା ଆନନ୍ଦର କଥା । ବସ୍ତୁନିଷ୍ଠ ପ୍ରବନ୍ଧର ଆଧାର ଭୂମିରୁ ଭୂମା ପର୍ଯ୍ୟନ୍ତ ପରିବ୍ୟାପ୍ତ । ଧର୍ମ, ସଂସ୍କୃତି, ସଦାଚାର, ଉପାସନା ପ୍ରଭୃତି ବିଷୟ ଆଶ୍ରୟରେ କିଛି କଥା କହିବାର ପ୍ରୟାସ କରିଅଛନ୍ତି । ଅଧ୍ୟାତ୍ମମନସ୍କ ଡଃ ପଣ୍ଡା ବହୁ ଶାସ୍ତ୍ର ଅଧ୍ୟୟନ, ଅନୁଶୀଳନ ପୂର୍ବକ ଯଥା ସ୍ଥାନରେ ଶାସ୍ତ୍ରୋକ୍ତ ଉକ୍ତି ଉଦ୍ଧାର କରି ନିଜ ବକ୍ତବ୍ୟକୁ ଦୃଢ଼ୀଭୂତ କରିବାର ଉଦ୍ୟମ କରିଛନ୍ତି ।

ହିନ୍ଦୁଧର୍ମର ଦେବଦେବୀ, ଯଥା- ଗଣେଶ, କାଳୀ, ଶିବ, ଦୁର୍ଗା ପ୍ରଭୃତିଙ୍କ ପୂଜା, ଆରାଧନା ଏବଂ ତତ୍ତ୍ୱ ସମ୍ବନ୍ଧରେ ଚର୍ଚ୍ଚା କରିଛନ୍ତି । ପୁନଃ ଭଗବାନ ବୁଦ୍ଧ, ଯୀଶୁ, ଠାକୁର ଶ୍ରୀଚୈତନ୍ୟ, ସନ୍ଥକବି ଭୀମଭୋଇ ପ୍ରମୁଖ ମହାନୁଭବଙ୍କ ସଂପର୍କରେ ସଂକ୍ଷେପରେ ନିର୍ଦ୍ଦିଷ୍ଟ ଦୃଷ୍ଟିରୁ ଆଲୋଚନାରେ ପ୍ରୟାସୀ ହୋଇଛନ୍ତି । ଜୀବନ

ଗଠନରେ ସହାୟକ କେତେକ ସାର୍ବଜନୀନ ନୀତିବାକ୍ୟଗୁଡ଼ିକ ପ୍ରତ୍ୟେକ ଆଶ୍ରମ ପାଇଁ ଯେ ଉପାଦେୟ ଏଥିରେ ଦ୍ୱିରୁକ୍ତି ନାହିଁ ।

ସଂପ୍ରତି ପ୍ରତ୍ୟେକ ବର୍ଗର ବ୍ୟକ୍ତି ଯେପରି ସଂଗ୍ରହ- ସଂଚୟରେ ନିଜର ସକଳ ଶକ୍ତି ବ୍ୟୟ କରୁଅଛନ୍ତି, ଫଳରେ ସମାଜରେ ନାନା ବିଶୃଙ୍ଖଳା, ବିଭ୍ରାଟ, ଅସହିଷ୍ଣୁତା, ହିଂସା ଏବଂ ଅଶାନ୍ତି ସୃଷ୍ଟି କରିଚାଲିଛି ତଥା ମାନବଜୀବନର ମହାନତାକୁ ଉପେକ୍ଷା କରିଚାଲିଛି । ଏହି କୋଳାହଳରୁ ନିଜର ଦୃଷ୍ଟିକୋଣକୁ ଫେରାଇ ଆଣି ବାସ୍ତବ ଜୀବନର ଲକ୍ଷ୍ୟ- ସଦାଚାର, ଶିଷ୍ଟାଚାର, ଧର୍ମସ୍ଥ ହେବା, ତଥା ମୁକ୍ତି ପଥର ଯାତ୍ରୀ ହେବା ପାଇଁ କେତେକ ପ୍ରବନ୍ଧରେ ଆହ୍ୱାନ ଦେଇଛନ୍ତି । ସ୍ଥୁଳତଃ ପ୍ରବନ୍ଧ ସଂକଳନ ସଂପର୍କରେ କୁହାଯାଇପାରେ ଯେ ଏହା ସୁଖପାଠ୍ୟ, ଜ୍ଞାନଗର୍ଭକ ଏବଂ ଉପାଦେୟ ।

ଇତି ପୂର୍ବରୁ ତାଙ୍କର ପ୍ରବନ୍ଧ ପୁସ୍ତକ 'ସେତ ଭକତ ଭାବରେ ବନ୍ଧା' ଏବଂ ଗବେଷଣା ନିବନ୍ଧ 'ଓଡ଼ିଆ ଭଜନ ସାହିତ୍ୟକୁ ଭୀମ ଭୋଇଙ୍କ ଦାନ' ପ୍ରକାଶିତ ହୋଇ ବହୁ ପାଠକୀୟ ଆଦୃତିଲାଭ କରିଛି । ଉକ୍ତ ପୁସ୍ତକ ଅନୁରୂପ ପାଠକୀୟ ଶ୍ରଦ୍ଧା ଲାଭର ଆଶା କରିବା ଅଯଥାର୍ଥ ହେବ ନାହିଁ । ଶ୍ରଦ୍ଧେୟ ପଣ୍ଡାଙ୍କ ସହ ମୋର ସଂପର୍କ ବେଶ୍ କିଛି ବର୍ଷର । ତାଙ୍କ ବ୍ୟବହାର, କଥାବାର୍ତ୍ତା ବେଶ ମାର୍ଜିତ ତଥା ସଂସ୍କୃତିସଂପନ୍ନ । ନିରଭିମାନୀ, ନିଷ୍ପାପର, ନିରଳସ, ସରଳ ଅଥଚ ଅନ୍ତର୍ମୁଖୀ ବ୍ୟକ୍ତିତ୍ୱ । ଲେଖାପଢ଼ା ଗବେଷଣାରେ ନିମଗ୍ନ ଥା'ନ୍ତି ।

ଆମ ସାଂସ୍କୃତିକ ପରଂପରା ସହିତ ସାଂପ୍ରତିକ ସାମାଜିକ ସ୍ଥିତିର ବିଶ୍ଳେଷଣ ତାଙ୍କ ଚିନ୍ତନର ମୌଳିକ ଆଭିମୁଖ୍ୟ । ଜୀବନର ଚଲାପଥରେ ବହୁ ଘାତ ପ୍ରତିଘାତର ସମ୍ମୁଖୀନ ହୋଇ ସାରସ୍ୱତ ସାଧନା ଅତୁଟ ରଖିଛନ୍ତି । ସାଧନାର ଧାରା ଅବ୍ୟାହତ ରହିଥାଉ । ତାଙ୍କ ଜୀବନ ମଧୁମୟ ହେବାର କାମନା ପୋଷଣ କରି ରହୁଛି ।

ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡା
ବାରବାଟୀ

# ଆତ୍ମକଥନ

ଜଂଜାଳଗ୍ରସ୍ତ ମନୁଷ୍ୟ ଶୟନେ, ସପନେ, ଜାଗରଣେ ପ୍ରତି ପଦେପଦେ ସୁଖଲାଳସାରେ ପ୍ରୟାସୀ ହୋଇଚାଲିଛି । କିନ୍ତୁ ବିଦ୍ୟାବିନା ମନୁଷ୍ୟ ଜୀବନ ନୀରର୍ଥକ । ମନୁଷ୍ୟ ଜନ୍ମରେ ବିଦ୍ୟାର୍ଥୀ ପରମାତ୍ମାକୁ ପ୍ରାପ୍ତ କରିବାରେ ସମାର୍ଥ୍ୟ ଗ୍ରହଣ କରିଥାଏ । ଏହା ଏକ ମହତ୍ତର କର୍ତ୍ତବ୍ୟ । ପ୍ରକୃତରେ ବ୍ରହ୍ମବାଦୀ ମନୁଷ୍ୟ ବ୍ରହ୍ମବିଦ୍ୟାର ମହତ୍ତ୍ୱ ବୁଝିଥାଏ । ମହିମା ପ୍ରକୃତରେ ଲୌକିକ ବିଦ୍ୟା, ଯେଉଁ ବ୍ୟକ୍ତି ନୈତିକ, ନୈଷ୍ଠିକ ବ୍ରହ୍ମଚାରୀ ସେ ହିଁ ସାରାଜୀବନ ଶାସ୍ତ୍ର ଓ ବ୍ରହ୍ମବିଦ୍ୟା ଅଧ୍ୟୟନରେ ରତ ଥାଏ । ବିଦ୍ୟା ଅଧ୍ୟୟନ ଏକ ତପ । ବିଦ୍ୟାର୍ଥୀକୁ ଶୁଦ୍ଧପୂତ କରି ଗଢ଼ିତୋଳେ । "ସ୍ୱାଧ୍ୟାୟାଭ୍ୟସନଂ ଚୈବ ବାଙ୍ମୟଂ ତପ ଉଚ୍ୟତେ"(ଗୀତା), ଏଣୁ ସଂସାରରେ ଯେ ଭୋଗ ଓ ସଂଗ୍ରହକୁ ତ୍ୟାଗକରେ ସେ ହିଁ ଶ୍ରେଷ୍ଠ ମନୁଷ୍ୟ ରୂପେ ପଦବାଚ୍ୟ ।

ପ୍ରକୃତପକ୍ଷେ ଦେଖିବାକୁ ଗଲେ ଯେଉଁ ବ୍ୟକ୍ତି ଚାରିବେଦ, ଷଡ଼ଶାସ୍ତ୍ର, ଅଷ୍ଟାଦଶ ପୁରାଣ, ଉପପୁରାଣ ଇତ୍ୟାଦିରେ ନିପୁଣ ହୋଇଥାଏ ତାହାକୁ ବିଦ୍ୱାନ

କୁହାଯାଏ । ପରନ୍ତୁ ଯେଉଁ ମହାନ ବ୍ୟକ୍ତି ପରମତତ୍ତ୍ୱକୁ ଜାଣିପାରେ ତାହାକୁ ପ୍ରକୃତ ବିଦ୍ୱାନ ବୋଲାଯାଏ । (ଗୀତା)

ଈଶ୍ୱର ପ୍ରାପ୍ତ କରିବାକୁ ହେଲେ ଯେ କୌଣସି ବିଗ୍ରହ ନିକଟକୁ ଯିବାର ଆବଶ୍ୟକତା ନାହିଁ । ସକଳ ଘଟରେ ଯେ ବିଦ୍ୟମାନ, ସେ ପରା ଅତି ନିକଟରେ, ପ୍ରତି ଅନ୍ତରରେ ବିରାଜିତ ।

ଯେଉଁ ମହାନ ବ୍ୟକ୍ତିର ପ୍ରେରଣାରେ ମୁଁ କଲମ ଧରିବାକୁ ସମର୍ଥ ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଭାବରେ ଦଣ୍ଡାୟମାନ ଶ୍ରୀଯୁକ୍ତ ଶେଷଦେବ ପଣ୍ଡା ଓ ଶ୍ରୀମତୀ କନକଲତା ପଣ୍ଡା, ମୋର ପୂଜନୀୟ ସାନବାପା, ସାନମାଆ । ମୋ' ଅତିଆପଣାର ଗୁରୁତୁଲ୍ୟ ପିତାସମ ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡାଙ୍କୁ ଶତକୋଟୀ ପ୍ରଣାମ, ତଥା ମାତାସମ ଶ୍ରୀମତୀ ମଂଜୁଲତା ଦାଶଙ୍କୁ ଅନ୍ତରର ଗଭୀରତମ ପ୍ରଦେଶରୁ ଶତବାର ପ୍ରଣାମ ଜଣାଉଛି ।

ଇତି
ବିନୀତ
ରଣଜିତ୍ ପଣ୍ଡା

# ସୂଚୀପତ୍ର











# ଅଗ୍ରପୂଜ୍ୟ ଗଣନାଥ

ଜୟ ଗଣେଶ ଜୟ ଗଣେଶ ଜୟ ଗଣେଶ ଦେବା
ମାତାଜାକୀ ପାରବତୀ, ପିତା ମହାଦେବା
ଏକ ଦନ୍ତ ଦୟା ବନ୍ତ ଚାରି ଭୁଜ ଧାରୀ
ମସ୍ତକେ ସିନ୍ଦୂର ଶୋହେ ମୂଷିକ ସବାରୀ
ଜୟ ଗଣେଶ ଜୟ ଗଣେଶ........... ।

ଗଣପତି- 'ଗ'ର ଅର୍ଥ ଜ୍ଞାନ 'ଣ' ମୋକ୍ଷ 'ପତି' ପରଂବ୍ରହ୍ମ । ଯେ ଗଣଙ୍କର ପତି- ଦେବତାଙ୍କର ଅଗ୍ରଗଣ୍ୟ ସେ ହିଁ ଗଣପତି । ତାଙ୍କୁ ମଧ ଗଜାନନ କୁହାଯାଏ । 'ଗ'ର ଅର୍ଥ ଲକ୍ଷ୍ୟ, 'ଜ'ର ଅର୍ଥ ଉତ୍ପତ୍ତି 'ନନ', ଅସମ୍ଭବ ଜ୍ଞାନର ସୃଷ୍ଟି ବା ଉଦ୍ଭବ ସେ ହିଁ ଗଜାନନ । ବିଘ୍ନ ବିନାୟକ, ସର୍ବ ବାଧାବିଘ୍ନକୁ ଯେ ପ୍ରତିହତ କରିପାରନ୍ତି ସେ ବିଘ୍ନ ବିନାୟକ ଭାବେ ଚରାଚର ବିଶ୍ୱବନ୍ଦିତ । ଏକଦନ୍ତ ବାମାବର୍ତ୍ତ ଗଣପତି ହିନ୍ଦୁ ଦେବତା ଭାବେ ପ୍ରତି ହିନ୍ଦୁଙ୍କର ଇଷ୍ଟଦେବ । ଅଗ୍ରପୂଜ୍ୟ ରିଷ୍ଟ ଖଣ୍ଡନକାରୀ ଦେବତା ଭାବେ ପୂଜା ପାଇଥାନ୍ତି । ଦକ୍ଷିଣାବର୍ତ୍ତ ଏକ ଦନ୍ତ ଗଣେଶ ତାନ୍ତ୍ରିକ ଦେବତା ଭାବେ ପୂଜ୍ୟ ହିନ୍ଦୁଧର୍ମର ପଞ୍ଚଦେବତାଙ୍କ ମଧ୍ୟରେ ତାଙ୍କ ସ୍ଥାନ ସ୍ୱତନ୍ତ୍ର । ଏଣୁ କୁହାଯାଏ- "ଗଣେ ନାରାୟଣେ ରୁଦ୍ରେ, ଅଗ୍ନିକେ ଭାସ୍କରେ ତଥା, ଭିନ୍ନାଭିନ୍ନ ନ କର୍ତ୍ତବ୍ୟଂ ପଞ୍ଚଦେବ ନମସ୍ତୁତେ ।" ଦେବ ଦେବ ମହାଦେବଙ୍କ ପୁତ୍ର ଗଣପତି ଅଟନ୍ତି । ତାଙ୍କ ମାତା ପାର୍ବତୀ ବିନା ଜନକରୁ ତାଙ୍କୁ ସୃଷ୍ଟି କରିଥିବାରୁ ତାଙ୍କ ନାମ ବିନାୟକ । ଭାଦ୍ରବମାସ ଶୁକ୍ଳ ଚତୁର୍ଥୀ ଦିନ ଶ୍ରୀଗଣେଶଙ୍କ ଜନ୍ମ ଉତ୍ସବ ପାଳନ କରାଯାଏ । ଏହାକୁ ଗେଣଶ ଚତୁର୍ଥୀ ବୋଲି କୁହାଯାଏ । ବୈଦିକ ଯୁଗରୁ ଗଣପତିଙ୍କ ପୂଜା ଆରାଧନା କରାଯାଇ ଆସୁଅଛି । ତାଙ୍କ ପୂଜାର ନିର୍ଦ୍ଦିଷ୍ଟ ସମୟ ପ୍ରକାଶ କରିବା ଠିକ୍ ହେବ

ନାହିଁ । ଏଣୁ ଅନୁମେୟ ଖ୍ରୀଷ୍ଟିୟ ଷଷ୍ଠ ବା ସପ୍ତମ ଶତାବ୍ଦୀ ମଧ୍ୟରେ ଗଣେଶ ପୂଜାର ପ୍ରସାର ଅୟମାରମ୍ଭ ହୋଇଥିବାର ଅନୁମେୟ କରାଯାଏ । ଓଡ଼ିଶାରେ ପୂଜା ପାଉଥିବା ମୂର୍ତ୍ତି ଓ ମନ୍ଦିର ଗାତ୍ରରେ ଖୋଦିତ ପ୍ରସ୍ତର ପ୍ରତିମାରୁ ଏହା ଜଣାପଡ଼େ । ଗଣେଶ ପୂଜା ସମୟରେ ଭକ୍ତ ବନ୍ଦନା କରି ଗାଇଉଠେ:-

"ନମୋ ଗଣେଶ ବିଘ୍ନେଶ ଗିରିଜା ନନ୍ଦନ ପ୍ରଭୋ
ମମ ବିଘ୍ନ ନିହନ୍ତାଷୁ ସର୍ବସିଦ୍ଧି ପ୍ରଦୋଭବ ।
× × × × ×
ଏକ ଦନ୍ତୋ ମହାକାୟଃ କପିଳୋ ଗଜକର୍ଣ୍ଣକଃ
ଲମ୍ବୋଦରଶ୍ଚ ବିକଟଃ ବିଘ୍ନନାଶନ ଏବଚ
ବିନାୟକୋ ଧୂମ୍ରକେତୁଃ ଗଣାଧକ୍ଷସ୍ତଥୈବଚ
ଏକାଦଶେଭାଲ ଚନ୍ଦ୍ରଃ ଦ୍ୱାଦଶେ ତୁ ଗଜାନନଃ ।"

ଗଣେଶଙ୍କ ଦ୍ୱାଦଶ ନାମ ପାଠ କରି ୨୧ଟି ଦୂବ ହରିଦ୍ରା ସୂତ୍ରରେ ଅକ୍ଷତ ସହ ବନ୍ଧନ କରି ଗଣେଶଙ୍କୁ ପ୍ରଦାନ କଲେ ସର୍ବ ମାଙ୍ଗଳିକ କାର୍ଯ୍ୟ ସିଦ୍ଧି ହୋଇଥାଏ । ଓଁ ଗଣାଧିପତୁଭ୍ୟଂ ନମଃ, ଓଁ ଉମା ପୁତ୍ର ତୁଭ୍ୟଂ ନମଃ, ଓଁ ଅଘନାଶନ ତୁଭ୍ୟଂ ନମଃ, ଓଁ କୁମାର ଗୁରବେ ନମଃ, ଇଉବକତ୍ର ତୁଭ୍ୟଂ ନମଃ, ମୂଷିକ ବାହନ ତୁଭ୍ୟଂ ନମଃ, ଓଁ କୁମାର ଗୁରବେ ତୁଭ୍ୟଂ ନମଃ ।

ଶିବଶଙ୍କର ଗଣେଶଙ୍କ ଶିରଚ୍ଛେଦନ କରିସାରିବା ପରେ ହସ୍ତୀର ମସ୍ତକ ଲଗାଇ ତାଙ୍କୁ ପୁନଃ ଜୀବନ୍ୟାସ ପ୍ରଦାନ କରି ସର୍ବ ଦେବଦେବୀମାନେ ସର୍ବ ଗୁଣସଂପନ୍ନ କରି ସର୍ବସିଦ୍ଧିର ଅଧିକାର ପ୍ରଦାନ କରିଥିଲେ । ଏଣୁ ହସ୍ତୀ ମସ୍ତକ ଥିବା ଗଣେଶଙ୍କୁ ପୂଜା କଲେ ଜୀବନରେ ଥିବା ସମସ୍ତ କଣ୍ଟକିତ ପଥ ସୁଗମ ହୋଇଯାଏ । ମୂଷିକ ଅନ୍ଧକାରର ପ୍ରତୀକ । ପ୍ରଭୁ ଗଣପତି ଅନ୍ଧକାରକୁ ନିଜ ନିୟନ୍ତ୍ରଣରେ ରଖି ଦୁନିଆକୁ ଆଲୋକ ବର୍ତ୍ତିକା ପ୍ରଦାନ କରୁଥିବାରୁ ସେ ହିଁ ଗଣେଶ । ମୂଷିକର ଘ୍ରାଣଶକ୍ତି ପ୍ରଖର । ଯାହା ବିଷୟବାସନାର ପ୍ରତୀକ । ଏଣୁ କାମନା, ବାସନା ଓ ଆଲୋକ ପ୍ରଦାନ କରୁଥିବାରୁ ସେ ଗଜାନନ, ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟର ସ୍ୱାମୀ ଗଣପତି ।

ଚୈତ୍ର ମାସରେ 'ବାସୁଦେବ' ରୂପୀ ଗଣେଶଙ୍କୁ ଉପାସନା କରି ସୁବର୍ଣ୍ଣ ଦକ୍ଷିଣା ପ୍ରଦାନ କରିବା ଉଚିତ୍ । ବୈଶାଖ ମାସରେ 'ଶଙ୍କର୍ଷଣ' ରୂପୀ ଗଣେଶଙ୍କୁ ଉପାସନା କରି ଶଙ୍ଖପ୍ରଦାନ କରିବା ବିଧେୟ । ଜ୍ୟେଷ୍ଠ ମାସରେ 'ସତୀବ୍ରତ' ଉପାସନା କରି ମା' ପାର୍ବତୀ ଓ ଗଣେଶଙ୍କ ଆଶୀର୍ବାଦ ଭିକ୍ଷା କରାଯାଏ । ଆଷାଢ଼ ମାସରେ 'ଅନିରୁଦ୍ଧ' ରୂପୀ ଗଣେଶଙ୍କୁ ପୂଜା କରି ସନ୍ନ୍ୟାସୀଙ୍କୁ ଥାଳ ଦାନ ଦିଆଯାଏ । ଶ୍ରାବଣ

ମାସରେ 'ବହୁଳା' ଗଣେଶ ପୂଜା କରିବାର ବିଧି ରହିଛି । ଭାଦ୍ରବ ମାସରେ 'ସିଦ୍ଧି ବିନାୟକ' ପୂଜା କରଣୀୟ । ଆଶ୍ୱିନ ମାସରେ 'କପଦୀଶ' ଗଣେଶଙ୍କୁ ପୁରୁଷ ସୁକ୍ତ ଦ୍ୱାରା ପୂଜା କରାଯାଏ । କାର୍ତ୍ତିକ ମାସରେ 'କରକ' ଚତୁର୍ଥୀ ବ୍ରତରେ ପୂଜାର୍ଚ୍ଚନା ଜରୁରୀ । ମାର୍ଗଶୀର ମାସରେ 'ଚାରିସମ୍ୱତ୍ସର' ପର୍ଯ୍ୟନ୍ତ ବ୍ରତ କରିବା ଜରୁରୀ । ପୌଷ ମାସରେ ବିଘ୍ନବିନାୟକଙ୍କୁ ପୂଜା କରିବା ଉଚିତ । ମାଘ ମାସରେ 'ଶଙ୍କଟ ବ୍ରତ' ଗଣେଶଙ୍କୁ ପୂଜାର୍ଚ୍ଚନା କରନ୍ତୁ । ଫାଲ୍‌ଗୁନ ମାସରେ 'ତୁଣ୍ଡିରାଜ' ବ୍ରତ କରଣୀୟ । ମଙ୍ଗଳବାରରେ ଚତୁର୍ଥୀ ପଡ଼ିଲେ ମଧ ଶୁଭ । ଏକଦନ୍ତ ମସ୍ତକ ଥିବା ଗଣେଶ ସର୍ବ ଶୁଭ । ସେ ଶିବାତ୍ମଜ 'ଶର୍ବ' ହିଁ ସର୍ବ ମଙ୍ଗଳମୟ ଶୁଭପ୍ରେମୀଙ୍କର ସେ ଇଷ୍ଟଦେବ । ସେ ଅବିଦ୍ୟା, ଅନ୍ଧକାର ଓ ଅଜ୍ଞତାର ବିନାଶକ । ତାଙ୍କ ଦ୍ୱାରା ଶାନ୍ତ, ପବିତ୍ର ଚିନ୍ତାର ଉଦ୍ରେକ ହୁଏ । ତାଙ୍କ କଲ୍ୟାଣ ହିଁ ଗଣକଲ୍ୟାଣ । ତାଙ୍କ ଆଶୀର୍ବାଦ ପ୍ରାପ୍ତ ହେଲେ ସର୍ବ ବୁଦ୍ଧି, ଜ୍ଞାନ, ସତ୍‌ଚେତନା ଓ ସତ୍‌ଚିନ୍ତାର ପରିପ୍ରକାଶ ଘଟେ । ଘରଦ୍ୱାରରେ ତାଙ୍କ ପ୍ରତିରୂପ ରଖାଯାଇ ଶୁଭକାମ କରାଯାଉଥିବା ସମୟରେ ଦେବାର୍ଚ୍ଚନା ସମୟରେ ସେ ପ୍ରଥମ ପୂଜା ହେବା ପରେ ଅନ୍ୟ ଦେବତାମାନଙ୍କୁ ଆବାହନ କରାଯାଏ । ଭୌତିକ, ଅଲୌକିକ, ଲୌକିକ କର୍ମମାନଙ୍କରେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ତାଙ୍କୁ ସତ୍ତ୍ୱ, ରଜ, ତମ ଗୁଣର ଅଧିକାରୀ ବୋଲି ଗଣନା କରାଯାଏ ।

ଆମ ରାଜ୍ୟ (ଓଡ଼ିଶା) ସଂଗ୍ରହାଳୟରେ କେତେକ ଦକ୍ଷିଣାବର୍ତ୍ତୀ ଗଣେଶ ମୂର୍ତ୍ତିକୁ ମୂର୍ତ୍ତିତତ୍ତ୍ୱବିଦ୍‌ମାନେ ତାନ୍ତ୍ରିକ ଗଣେଶ ବୋଲି ଆଖ୍ୟା ଦିଅନ୍ତି । କିନ୍ତୁ ଦେଖାଯାଏ ଚଣ୍ଡିଖୋଲସ୍ଥିତ ମହାବିନାୟକ ମନ୍ଦିରର ଗଣେଶଙ୍କୁ ଗଣେଶ, ଶିବ, ଦୁର୍ଗା, ବିଷ୍ଣୁ ଓ ସୂର୍ଯ୍ୟ ଭାବରେ ପୂଜା କରାଯାଏ । ଧାର୍ମିକ ଚିନ୍ତାଧାରା ବହନ କରୁଥିବା ଶିଳାପୂଜା ଅନ୍ୟତ୍ର ଏପରି ଦେଖିବା ବିରଳ । ଆର୍ଯ୍ୟ ସମାଜ ସିଦ୍ଧାନ୍ତ ପନ୍ଥାର ବେଦଜ୍ଞ ଦୟାନନ୍ଦ ସରସ୍ୱତୀ ସତ୍ୟାର୍ଥ ପ୍ରକାଶର ଏହି କଳିଯୁଗରେ ବୌଦ୍ଧ ଓ ଜୈନମାନଙ୍କଠାରୁ ମୂର୍ତ୍ତିପୂଜାର ଅୟମାରମ୍ଭ ବୋଲି ପ୍ରକାଶ କରିଛନ୍ତି । ଜୈନ ଧର୍ମ ପ୍ରଚାରକ ମହାବୀରଙ୍କ ଖ୍ରୀ.ପୂ. ୫୨୭ରେ ଦେହତ୍ୟାଗ ପରେ ତାଙ୍କ ଶିଷ୍ୟମାନେ ତାଙ୍କୁ ପ୍ରଥମେ ମୂର୍ତ୍ତି ରୂପେ ପୂଜା କରୁଥିବାରୁ ପରେ ମୂର୍ତ୍ତିପୂଜାର ସୃଷ୍ଟି ହୋଇଥିଲା । ମହାବିନାୟକ ମନ୍ଦିରରେ ଏକତ୍ର ବେଲପତ୍ର ସହ ତୁଳସୀ ଜଟା ଦେବତାଙ୍କୁ ସମର୍ପଣ କରାଯାଏ । ଏହି ପୀଠରେ ଏହା ହିଁ ବୈଶିଷ୍ଟ୍ୟ । ପ୍ରତିଦିନ ପୂଜା ସମୟରେ ଦେବତାଙ୍କୁ ଆବାହନ କରାଯାଇ ଏକତ୍ର ପଞ୍ଚଦେବତାଙ୍କ ପୂଜା ହୁଏ । ସର୍ବେ ଏକ ଗୁଣ ଭିନ୍ନ ନାମ ବହନ କରୁଥିବା ପଞ୍ଚଦେବ ଏକ ଭାବେ ଖ୍ୟାତ । କିନ୍ତୁ ଦେଖିବାକୁ ଗଲେ ଶୈବ ମନ୍ଦିରଗୁଡ଼ିକରେ ଗଣେଶ ପାର୍ଶ୍ୱଦେବତା ଭାବେ ପୂଜାପାଆନ୍ତି । ପରନ୍ତୁ ଏଠାରେ ତା'ର ବ୍ୟତିକ୍ରମ ଦେଖାଯାଏ । ତ୍ରେତୟା ଯୁଗରୁ ମୂର୍ତ୍ତି ପୂଜାର ସୃଷ୍ଟି ହୋଇଥିଲା (ଭାଗବତ) ।

ସପ୍ତମାତୃକା ମୂର୍ତ୍ତି ସେଟ୍ ପାର୍ଶ୍ୱରେ ଗଣେଶଙ୍କ ମୂର୍ତ୍ତି ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରେ । ଏହା ସାଧାରଣତଃ ଭୁବନେଶ୍ୱରର ପର୍ଶୁରାମେଶ୍ୱର ଓ ବୈତାଳ ମନ୍ଦିରରେ ଦେଖାଯାଆନ୍ତି । ତତ୍‌ସହ ଲିଙ୍ଗରାଜ ମନ୍ଦିରରେ ଅବସ୍ଥିତ ଗଣେଶ ଓ ପୁରୀ ଶ୍ରୀଜଗନ୍ନାଥ ମନ୍ଦିରସ୍ଥ ବେଢ଼ା ମଧରେ କାଞ୍ଚି ଗଣେଶ ଭାବେ ପୂଜା କରାଯାଏ । ଘଟ ମଧରେ ମଧ ପ୍ରଧାନତଃ ଆଦ୍ୟରେ ଗଣେଶ, ବରୁଣ, ଆଦିତ୍ୟ, ଇନ୍ଦ୍ର ଓ ଗ୍ରାମଦେବୀଙ୍କୁ ପୂଜା କରାଯାଏ । କଳଙ୍କ ଲଡୁର ପ୍ରତୀକ 'ଗଣନାଥ ସର୍ବ କଳଙ୍କ ଦୂର କରି ସୁଫଳ ପ୍ରଦାନ କରୁଥିବାରୁ ସେ ହିଁ ମହାବିନାୟକ ।

ବିଦ୍ୟାରମ୍ଭେ ବିବାହେ ଚ ପ୍ରବେଶେ ନିର୍ଗମେ ତଥା
ସଂଗ୍ରାମେ ସଙ୍କଟେ ଚୈବ- ବିଘ୍ନସ୍ତସ୍ୟ ନାଜାୟତେ
ବକ୍ରତୁଣ୍ଡ ମହାକାୟ କୋଟି ସୂର୍ଯ୍ୟ ସମପ୍ରଭ
ନିର୍ବିଘ୍ନ କୁରୁମେ ଦେବ ସର୍ବକାର୍ଯ୍ୟେଷୁ ସର୍ବଦା ।

ଗଣେଶଙ୍କ କଲ୍ୟାଣରୁ ଅଷ୍ଟାଦଶ ପୁରାଣର ଉତ୍ପତ୍ତି ସମ୍ଭବ ହୋଇଛି । ବ୍ୟାସଦେବ ମଧ ୧୮ ଖଣ୍ଡ ଭାରତ ରଚନା କରି ମହାନ ହୋଇପାରିଥିଲେ । ବିଘ୍ନରାଜ ବିଘ୍ନାସୁରକୁ ବଦ୍ଧ କରିଥିବାରୁ ଏହା ତାଙ୍କ ବୀରତ୍ୱର ପ୍ରତୀକ । ସିଦ୍ଧି ଓ ରଦ୍ଧି ତାଙ୍କର ଦୁଇ ପତ୍ନୀ । ଶ୍ରୀ ଅରବିନ୍ଦଙ୍କ ମତରେ ଗଣେଶ ହେଉଛନ୍ତି ବିଶ୍ୱାସିକା, ବୁଦ୍ଧି ଓ ସିଦ୍ଧିର ପ୍ରତୀକ । ତାଙ୍କ ଉପାସନା ଦ୍ୱାରା ସାଧକର ସମସ୍ତ ବିଘ୍ନ ଦୂର ହୁଏ । ସ୍ୱାମୀ ଶିବାନନ୍ଦଙ୍କର ମତରେ ଗଣପତି ଜ୍ଞାନ ଓ ଆନନ୍ଦର ମୂର୍ତ୍ତିମନ୍ତ ପ୍ରତୀକ ଅଟନ୍ତି । ଗଣ + ଈଷ= ଗଣେଶ । ଯାହାଙ୍କ ଗୁଣକୁ ଗଣି ହୁଏ ନାହିଁ । ଯାହା ସତ୍ୟ ଧର୍ମ ଉପରେ ପର୍ଯ୍ୟବେଶିତ ସେ ହିଁ ଗଣେଶ । ସର୍ବ ବିଦ୍ୟା ଯାହାଙ୍କ ମୁଖାରବିନ୍ଦରୁ ଝରିପଡ଼େ । ଯାହାଙ୍କ ମୁଖନିସୃତ ବାଣୀ ଅମର, ଅମୃତ । ସେ ହିଁ ଗଣନାଥ । ଯାହାଙ୍କ ଆଶୀର୍ବାଦରେ ମହାମୂର୍ଖ ମହାପଣ୍ଡିତ ପାଲଟି ଯାଏ ସେ ହିଁ ଗଣେଶ ।

ସାଧାରଣତଃ ଗଣେଶ ଦଣ୍ଡାୟମାନ ଓ ଆସନସ୍ଥିତ । ସେ ଚତୁର୍ଭୁଜଧାରୀ, ଦୁଇହସ୍ତରେ ପାଶ ଓ ଅଙ୍କୁଶ ଧାରଣ କରିଥାନ୍ତି । ନିମ୍ନସ୍ଥ ହସ୍ତରେ ବରଦ ମୁଦ୍ରା ସହ, ଅନ୍ୟ ଏକ ହସ୍ତରେ ଲଡୁ ଧରିଥାନ୍ତି । ଅଙ୍କୁଶ ପ୍ରାଣୀ ସତ୍‌ମାର୍ଗରେ ଯିବାର ପଥ ପ୍ରଦର୍ଶକ । ପାଶଦ୍ୱାରା ଅବିଦ୍ୟାକୁ ଦୂରୀଭୂତ କରାଯାଏ । ଗଣନାଥ ସର୍ବ ପ୍ରାଣୀଙ୍କର ଶୁଭଚିନ୍ତକ ହୋଇଥିବାରୁ ତାଙ୍କ ପାଦପଦ୍ମରେ ଏ ଅଧମ ଦାସାନୁଦାସ ଶତକୋଟି ପ୍ରଣାମ ଜଣାଉଛି । ଜୟଶ୍ରୀ ଗଣେଶ ମହାରାଜା କି ଜୟ ।



# ବିଜୟର ପର୍ବ କାଳୀପୂଜା ଓ ଦୀପାବଳୀ

କରାଳ ବଦନା ଘୋରାଂ ମୁକ୍ତକେଶୀଂ ଚତୁର୍ଭୁଜାଂ
କାଳିକା ଦକ୍ଷିଣା ଦିବ୍ୟାଂ ମୁଣ୍ଡମାଳା ବିଭୂଷିତାଂ
ସଦ୍ୟଛିନ୍ନ ଶିରଃ ଖଡ଼୍ଗ ବାମା ଧୋର୍ଦ୍ଧଂ କରାମ୍ବୁଜାମ
ଅଭୟଂ ବରଦଂ ଚୈବ ଦକ୍ଷିଣାଧୋର୍ଦ୍ଧ ପାଣିକା ।

ଆର୍ଯ୍ୟ ସଂସ୍କୃତି ଦେବଭୂମି ଭାରତବର୍ଷରେ ବାରମାସରେ ତେରପର୍ବ । ପବିତ୍ର କାର୍ତ୍ତିକ ମାସ କୃଷ୍ଣପକ୍ଷ ଅମାବାସ୍ୟା ତିଥିକୁ ସର୍ବତ୍ର ଦୀପାବଳି ଉତ୍ସବ ଭାବରେ ପାଳନ କରାଯାଏ । ଦୀପାବଳୀର ମୁଖ୍ୟ ଉଦ୍ଦେଶ୍ୟ ଅଜ୍ଞାନକୁ ନାଶକରି ଜ୍ଞାନାଲୋକରେ ଉଦ୍ଭାସିତ ହେବା । ପାପୀ, ଅଧର୍ମୀ, ଅସୁରମାନଙ୍କୁ ବିନାଶ କରି ଧର୍ମର ଧ୍ୱଜା ଉଡ଼ାଇବା । ଅହଂ ଭାବ, ଗର୍ବ ଓ ଆସୁରିକ କୁକର୍ମରୁ ଦୂରେଇ ରହିବା ।

ବିଶ୍ୱରୂପୀ ମା' କାଳୀ ରାକ୍ଷସମାନଙ୍କୁ ଧରାଧାମରୁ ଧ୍ୱଂସ କରିବାକୁ ଯାଇ ସେମାନଙ୍କୁ ଦମନ କରିବାକୁ ଲାଗିଲେ । ଦେବୀଙ୍କର ଉଗ୍ରରୂପ ଦେଖି ଦେବତାମାନେ ପ୍ରମାଦ ଗଣିଲେ । କାରଣ ତାଙ୍କ ସମ୍ମୁଖକୁ ଯିଏ ଆସୁଥିଲେ ତାକୁ ସେ ଧ୍ୱଂସ କରିବାକୁ ପଛାଉ ନଥିଲେ । ଏଣୁ ଦେବତାମାନେ ଶିବଙ୍କୁ ଅନୁରୋଧ କଲେ ମା' କାଳୀଙ୍କୁ ଏଥିରୁ ନିବୃତ କରାଇବା ପାଇଁ । ଶିବଶଙ୍କର କୌଣସି ଉପାୟ ନପାଇ ଦେବୀଙ୍କ ଯାତ୍ରାପଥରେ ଶୟନ କରି ରହିଲେ । ଦେବୀ ସଂହାର କାର୍ଯ୍ୟରେ ବ୍ୟସ୍ତଥିବାରୁ ଅଜାଣତରେ ଶିବଙ୍କ ଛାତି ଉପରେ ଦଣ୍ଡାୟମାନ ହେଲେ । ଏହି ଭୁଲ୍ କାର୍ଯ୍ୟ ପାଇଁ ନିଜର ଜିଭକୁ କାମୁଡ଼ି ପକାଇ କ୍ରୋଧରୁ ଶାନ୍ତ ହେଲେ । ଦେବୀଙ୍କର ଏହି ରୂପ ମହାକାଳୀ ରୂପେ ଖ୍ୟାତ । ଘଟଣାଟି କାର୍ତ୍ତିକ ଅମାବାସ୍ୟାରେ ଘଟିଥିବାରୁ ଉକ୍ତ ଦିବସକୁ ମନେରଖିବା ପାଇଁ ଦେବତାଙ୍କଠାରୁ ନରନାରାୟଣଙ୍କ ପର୍ଯ୍ୟନ୍ତ ସମସ୍ତେ ଦେବୀଙ୍କର ସ୍ତୁତିଚାରଣ କରିବା ସହିତ ଦୀପାବଳୀ ଦିନ କାଳୀପୂଜା ପାଳନ କରୁଛନ୍ତି ।

'ଶବାରୂଢ଼ା ମହାଭୀମାଂ ଘୋରଦ୍ରଷ୍ଟାଂ ବରପ୍ରଦାମ୍
ହାସ୍ୟଯୁକ୍ତାଂ ତ୍ରିନେତ୍ରାଞ୍ଚ କପାଳ କର୍ତ୍ତୃକାକରାମ୍
ମୁକ୍ତକେଶୀଂ ଲୋଳ ଜିହ୍ୱା ପିବନ୍ତି ରୁଧିରଂ ମୁହୁ
ଚତୁର୍ବାହୁ ଯୁତା ଦେବୀଂ ବରାଭୟ କରାସ୍ମରେତ୍ ।'

(ସିଦ୍ଧେଶ୍ୱର ତନ୍ତ୍ର)

ହିନ୍ଦୁଧର୍ମରେ ଶକ୍ତିପୂଜା ପ୍ରାଚୀନତମ । ଏହାର ପ୍ରଭାବ ବୌଦ୍ଧଧର୍ମ ଓ ଜୈନଧର୍ମରେ ମଧ୍ୟ ପରିଲକ୍ଷିତ ହୁଏ । ମହାକାଳୀ ଋକ୍‌ବେଦରୂପା, ମହାଲକ୍ଷ୍ମୀ ଯର୍ଜୁବେଦରୂପା, ମହାସରସ୍ୱତୀ ସାମବେଦରୂପା ତାମସୀ, ରାଜସୀ, ସାତ୍ତ୍ୱିକ ଆଦି ବହୁବିଧ ନାମରେ ବିଶ୍ୱବିଦିତା । ଉକ୍ତ ରୂପଗୁଡ଼ିକ ଏକ ଓ ଅଭିନ୍ନ ହେଲେ ମଧ୍ୟ ଦେବୀ ବ୍ରାହ୍ମୀ ରୂପରେ ସୃଷ୍ଟିକାରେଣୀ, ବୈଷ୍ଣବୀ ରୂପରେ ପାଳନକର୍ତ୍ତ୍ରୀ ଓ ମହାକାଳୀ ରୂପରେ ସଂହାରକାରିଣୀ । ଦେବୀଙ୍କର ଅଂଶରେ ପ୍ରତି ନାରୀଙ୍କର ଜନ୍ମ । ପ୍ରତି ନାରୀଙ୍କୁ ତେଣୁ ଦେବୀମୂର୍ତ୍ତି ଜ୍ଞାନକରି ସମ୍ମାନ ପ୍ରଦର୍ଶନ କରିବା ବିଧେୟ ।

କଲ୍‌କୀ ପୁରାଣ ବର୍ଣ୍ଣନା ଅନୁସାରେ କାଳୀ ହେଉଛନ୍ତି ଦଶମହାବିଦ୍ୟା ମଧ୍ୟରେ ପ୍ରଧାନ । କାଳୀଙ୍କର ରୂପଗୁଡ଼ିକ ଭଦ୍ରକାଳୀ, ସିଦ୍ଧକାଳୀ, ଦକ୍ଷିଣକାଳୀ, ଗୁହ୍ୟକାଳୀ, ଚାମୁଣ୍ଡାକାଳୀ, ଶ୍ରୀକାଳୀ, ଶ୍ମଶାନକାଳୀ ଓ ରକ୍ଷାକାଳୀ । ମା' କାଳୀ ଚତୁର୍ଭୁଜା, ଦକ୍ଷିଣ ହସ୍ତରେ ଖଡ୍ଗ, ଦୁଇ ବାମ ହସ୍ତରେ ଢାଲ, ପାଶ ଚନ୍ଦ୍ରହାସ । ବସ୍ତ୍ରବ୍ୟାଘ୍ର ଚର୍ମ । ଶବ ଏହାଙ୍କର ବାହନ । ଲୋଳଜିହ୍ୱା, ହସ୍ତରେ ନରମୁଣ୍ଡମାଳ, କର ଓ ଅଭୟ ମୁଦ୍ରା, ସର୍ବଦା ରକ୍ତପାନକାରିଣୀ ରୂପରେ ଦଣ୍ଡାୟମାନ । ଅଗ୍ନିଙ୍କର ପ୍ରଥମ ସାତୋଟି ଜିହ୍ୱା ମଧ୍ୟରୁ କାଳୀ ହିଁ ପ୍ରଥମ ଜିହ୍ୱା ।

'କାଳୀ କରାଳୀ ଚ ମନୋଜବାଚ
ସୁଲୋହିତ ଯାଚ ସୁଧୂମ୍ର ବର୍ଣ୍ଣା
ସ୍ଫୁଲିଙ୍ଗିନୀ ବିଶ୍ୱରୂପୀ ଚ ଦେବୀ
ଲୋଳାୟ ମାନା ଇତି ସପ୍ତଜିହ୍ୱା ।"

(କାଳୀବିଳାସ ତନ୍ତ୍ର)

କାଳ+ଈ= କାଳୀ । କାଳ ଅର୍ଥ ସମୟ । ଯାହାର ଆଦି ଅନ୍ତ ନଥାଏ । ଦେବଦେବ ମହାଦେବଙ୍କୁ ମହାକାଳ କୁହାଯାଏ । ସେ ତ ନିର୍ଗୁଣ ବ୍ରହ୍ମସ୍ୱରୂପ । ଚରାଚର ସୃଷ୍ଟିର ଆଦି ଓ ଅନ୍ତ । ତାଙ୍କୁ ଉପଲବ୍ଧି କରିବା ପାଇଁ ଜୀବନ୍ତ ଶକ୍ତିର ଆବଶ୍ୟକ । ସେହି ଜୀବନ୍ତ ଶକ୍ତି ହିଁ ଈଶା, ଈଶାବାସ୍ୟ ମିଦଂ ସର୍ବମ୍ । କାଳ ସହ ଈ ସଂଯୋଗ ହୋଇ କାଳୀ । ଈ ହେଉଛନ୍ତି ଈଶ୍ୱରୀ, ସଗୁଣ ବ୍ରହ୍ମ, ପୂର୍ଣ୍ଣ ସ୍ୱରୂପ । କାଳୀ ହେଉଛନ୍ତି କାଳକୁ ଉପଲବ୍ଧ କରିବାର ପ୍ରାଣଶକ୍ତିର ଆଧାର । ସୃଷ୍ଟି ଆରମ୍ଭ ପୂର୍ବରୁ ତମଃ ବା ତମସା ଗର୍ଭରେ ସୃଷ୍ଟି (ଋକ୍‌ବେଦ) ଆଚ୍ଛନ୍ନ ଥିଲା । ଏହିହ ତମଃ ହିଁ କାଳୀ । କାଳକୁ ଗ୍ରାସ କରିପାରୁଥିବାରୁ ହିଁ କାଳୀଭାବେ ବିଦିତ । (ଦେବୀ ଭାଗବତ) ସତୀ ଦକ୍ଷଯଜ୍ଞରେ ସ୍ୱାମୀଙ୍କ ନିନ୍ଦା ସହି ନପାରି ଦେହତ୍ୟାଗ କରି ମେନକାଙ୍କ ଗର୍ଭରୁ କାଳୀ ଭାବରେ ସମ୍ଭୂତା ହୋଇଥିବାର ନାରଦ ପଞ୍ଚରାତ୍ରରେ ବର୍ଣ୍ଣିତ ।

'ଜୟନ୍ତୀ ମଙ୍ଗଳା କାଳୀ, ଭଦ୍ରକାଳୀ କପାଳିନୀ
ଦୁର୍ଗା କ୍ଷମା ଶିବାଧାତ୍ରୀ ସ୍ୱାହା ସ୍ୱାଧା ନମସ୍ତୁତେ ।'

କାଳୀ ପୂର୍ଣ୍ଣବ୍ରହ୍ମମୟୀ, ଆବରଣ ଶୂନ୍ୟ, ଦିଗମ୍ବରୀ ଅଟନ୍ତି । ମୁକ୍ତକେଶୀ, ତ୍ରିନୟନା କାଳୀ । ଚନ୍ଦ୍ର, ସୂର୍ଯ୍ୟ ଓ ଅଗ୍ନି ଦ୍ୱାରା ବିଶ୍ୱବ୍ରହ୍ମାଣ୍ଡକୁ ସୁନେତ୍ରରେ ପରିଦର୍ଶନ କରିଥାନ୍ତି । ମହାକାଳୀ ରୂପରେ ବିଶ୍ୱ ବ୍ରହ୍ମାଣ୍ଡକୁ ଗ୍ରାସ କରିପାରୁଥିବାରୁ ସେ କାଳୀ କରାଳ ବଦନା ଭାବରେ ପୂଜିତ । ମହାକାଳୀ ଚଣ୍ଡ ମୁଣ୍ଡଙ୍କୁ ବଧ କରିଥିବା ବିଷୟ ମାର୍କଣ୍ଡେୟ ପୁରାଣର ସପ୍ତସତୀ ଚଣ୍ଡୀରେ ବର୍ଣ୍ଣିତ ଅଛି ।

'କାଳୀ କରାଳ ବକ୍ତ୍ରାନ୍ତ ଦୁର୍ଦ୍ଦର୍ଶ ଶଶନଜ୍ୱାଳା
ଭଦ୍ୱାୟ ଚ ମହାସିଂ ହଂ ଦେବୀ ଚଣ୍ଡ ମଧାବତ
ଗୃହିତ୍ୟା ଚାସ୍ୟ କେଶେଷୁ ଶିରସ୍ତେ ନାଶିନା ଛିନ୍ନତ

× × ×

ମୁଣ୍ଡଂ ଚ ସୁମହାବୀର୍ଯ୍ୟ ବିଶୋ ଭେଜେଭୟାତୁରମ୍
ଶିରଶ୍ଚଣ୍ଡସ୍ୟ କାଳୀଚ ଗୃହିତ୍ୱା ମୁଣ୍ଡମେବଚ ।'

ପୁରାଣ ବର୍ଣ୍ଣନା ଅନୁସାରେ ମହିଷାସୁରର ସେନାପତି ରକ୍ତବୀର୍ଯ୍ୟର ରଣାଙ୍ଗନରେ ରକ୍ତ ବିନ୍ଦୁରୁ ସହସ୍ରାଧିକ ଅସୁର ଜନ୍ମନେବାରୁ ଏହା ପ୍ରତିରୋଧ କରିବା ପାଇଁ ଦେବୀ ଦୁର୍ଗା ତାଙ୍କ କପାଳରୁ ଜାତ କରିଥିଲେ ମହାମାୟା ମହାକାଳୀ । ସେ ରକ୍ତବିନ୍ଦୁକୁ ସଂହାର କରିଥିଲେ । ମହାକାଳୀଙ୍କର ଉଗ୍ର ରୂପକୁ ଦୀପାବଳୀ ରାତ୍ରିରେ ପୂଜା କରାଯାଏ । ଦୀପାବଳୀକୁ ମଧ ମହାନିଶା ଓ ଶୁଭରାତ୍ରି ବୋଲି କୁହାଯାଏ । ହସ ଓ ଆନନ୍ଦର ପର୍ବ ଦିଓ୍ୱାଳୀ ଆବାଳ ବୃଦ୍ଧ ବନିତା ସମସ୍ତଙ୍କ ପାଇଁ ସୁଖ ସମୃଦ୍ଧିର କାମନା କରିଥାଏ ।

ଅମୃତ ବଣ୍ଟନ ସମୟରେ ବିଷ୍ଣୁଙ୍କର ମୋହିନୀ ରୂପଲାବଣ୍ୟକୁ ଦେଖି ଦେବଦେବ ମହାଦେବ ତାଙ୍କୁ ପତ୍ନୀ ରୂପେ ପାଇବାକୁ ଆଶା ପୋଷଣ କରନ୍ତେ ପ୍ରଭୁ ବିଷ୍ଣୁ କାଳୀ ରୂପରେ ଗୋଟିଏ ରାତି ଶିବଙ୍କର ପତ୍ନୀ ହୋଇଥିଲେ । ଜଗନ୍ନାଥ ମହାପ୍ରଭୁଙ୍କୁ ମଧ ଦକ୍ଷିଣକାଳୀକା ବୋଲି କୁହାଯାଏ ।

'ଶ୍ୟାମା ଚକ୍ରେ ଜଗନ୍ନାଥ ଦକ୍ଷିଣ କାଳିକା ସ୍ୱୟଂ
ଶବାରୂଢ଼ା ମହାଭୀମାଂ ଘୋର ଦଂଷ୍ଟ୍ରାଂ ବୃହନ୍ମୁଖଂ
ମୁଣ୍ଡମାଳା ଧରାଂ ଦେବୀ ଲୋଳଜିହ୍ୱାଂ ଦିଗମ୍ବରାମ୍
ଚତୁର୍ଭୁର୍ଜାଂ ଖଡ଼ଗମୁଣ୍ଡ ବରାଭୟ କାରାଂ ଶିବାମ୍
ଏବଂ ସଂଚିନ୍ତୟେ କ୍ୱାଳୀଂ ଶ୍ମଶାନାକାୟ ବାସନାମ୍ ।'

ତ୍ରେତୟା ଯୁଗରେ ପିତୃସତ୍ୟ ପାଳି ପ୍ରଭୁ ଶ୍ରୀରାମଚନ୍ଦ୍ର ଚଉଦ ବର୍ଷ ବନବାସ ଗତେ ଆଶ୍ୱିନ ବିଜୟା ଦଶମୀ ତିଥିରେ ଲଙ୍କେଶ୍ୱର ରାବଣକୁ ବଧକରି ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରିଥିଲେ । କାର୍ତ୍ତିକ ଅମାବାସ୍ୟା ତିଥିରେ ପ୍ରଭୁ ରାମଚନ୍ଦ୍ର ସାଥୀରେ ମାତା ସୀତା ଓ ଅନୁଜ ଲକ୍ଷ୍ମଣଙ୍କୁ ଧରି ଅଯୋଧ୍ୟା ନଗରୀରେ ପ୍ରବେଶ କରିଥିଲେ । ଏହି ଶୁଭ ତିଥିରେ ରାଜ୍ୟର ପ୍ରଜାକୁଳ ଆନନ୍ଦବିଭୋର ହୋଇ ଦୀପ ଜାଳି ସମସ୍ତଙ୍କୁ ସ୍ୱାଗତ କରିଥିଲେ । ଏହି ଦିନଟି ଥିଲା ସତ୍ୟର ଜୟ ଓ ଅସତ୍ୟର ପରାଜୟର ଦିନ । ସତ୍ୟଯୁଗରେ ଧାର୍ମିକ ମହାଦାନୀ ବଳିରାଜାଙ୍କ ଗର୍ବକୁ ଚୂର୍ଣ୍ଣ କରିବା ପାଇଁ ପ୍ରଭୁ ବାମନ ଅବତାର ଗ୍ରହଣ କରି ମାତ୍ର ତିନି ପାଦ ଭୂମି ମାଗି ବଳିକୁ ପାତାଳକୁ ଚାପିଥିଲେ । ସେ ତ ଗରବ ଗଞ୍ଜନ ବାନା, କାହାର ଗର୍ବକୁ ସହ୍ୟ ବା କରିବେ କିପରି ? ମର୍ତ୍ତ୍ୟବୈକୁଣ୍ଠର ପ୍ରଜାକୁଳ ଦାନ ନ ପାଇବାରୁ ବହୁତ ମନଦୁଃଖ କଲେ । ପାତାଳରେ ବଳିରାଜା ମଧ୍ୟ ଦୁଃଖିତ ହୋଇ ପ୍ରଭୁଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ । ସେ କାର୍ତ୍ତିକ ଅମାବାସ୍ୟା ତିଥିରେ ପୃଥିବୀ ଭ୍ରମଣରେ ଯିବେ । ଭଗବାନ ତାଙ୍କୁ ସନ୍ତୁଷ୍ଟ ହୋଇ ଏହି ବର ପ୍ରଦାନ କଲେ । ଏହି ଦିନଟିରେ ପ୍ରଜାଗଣ ଉଲ୍ଲସିତ ହୋଇ ବଳିରାଜାଙ୍କୁ ଦୀପ ଜାଳି ସ୍ୱାଗତ ଜଣାଇଲେ । ଏହି ଶୁଭ ମୁହୂର୍ତ୍ତରେ ମଧ୍ୟ ରକ୍ଷାକାଳୀଙ୍କୁ ଆବାହନ କରାଯାଇ ସନ୍ତୁଷ୍ଟ କରାଯାଏ ଓ ସର୍ବ କାର୍ଯ୍ୟରେ ସିଦ୍ଧିପ୍ରାପ୍ତି ପାଇଁ କାମନା କରାଯାଏ ।

'ଖଡ୍‌ଗୋଭ ନେନ୍ତ୍ର ଖଣ୍ଡସ୍ରବଦମୃତରସ ପ୍ଲାବିତାଙ୍ଗୀ ତ୍ରିନେତା
ସବ୍ୟେ ପାଶୌ କପାଳଂ ଗଳ ଦସୃଜମଥୋ ମୁକ୍ତକେଶୀ ପର୍ବନ୍ତୀ
ଦିଗ୍‌ବସ୍ତ୍ରା ବଦ୍ଧ କାଞ୍ଚି ମଣିମୟ ମୁକୁଟା ଦୈର୍ଯ୍ୟୁତା ଦୀପ୍ତଜିହ୍ୱା
ପ୍ରାୟାନ୍ନୀଳୋପଳାଭା ରବିଶଶୀ ବିଳସତ୍ କୁଣ୍ଡଳାଲୀଢ଼ ପାଦା ॥'

ଶ୍ରୀକୃଷ୍ଣ ନରକାସୁରକୁ ଉକ୍ତ ଦିବସରେ ନିଧନ କରିଥିବାରୁ ଲୋକମାନେ ଆନନ୍ଦ ଉଲ୍ଲାସରେ ବିଭୋର ହୋଇ ଦୀପ ପ୍ରଜ୍ୱଳନ କରିଥିଲେ । ଏହି ଦିନରେ ପିତୃପୁରୁଷଙ୍କୁ ଶ୍ରାଦ୍ଧ ତର୍ପଣ କରାଯାଏ । ଦୀପାବଳୀ ଦିନ ପବିତ୍ର ପୀଠସ୍ଥଳୀ ଓ ଘରକୁ ମଧ୍ୟ ପ୍ରଦୀପ ମାଳାରେ ସୁସଜ୍ଜିତ କରାଯାଇ ଆନନ୍ଦ ସହକାରେ ବାଣ ମରାଯାଇଥାଏ । କାଉଁରିଆ କାଠିରେ ଅଗ୍ନି ସଂଯୋଗ କରାଯାଇ ବଡ଼ବଡ଼ୁଆଙ୍କୁ ଡକାଯାଏ ।

'ବଡ଼ ବଡ଼ୁଆ ହୋ'
ଅନ୍ଧାରରେ ଆସ
ଆଲୁଅରେ ଯା'
ବାଇଶି ପାହାଚେ ଗଡ଼ ଗଡ଼ଉ ଥା.. ।'

ଅସୁର ରାଜା ବଳି ଦ୍ୱାରା ଲକ୍ଷ୍ମୀ ବନ୍ଦୀ ହୋଇ ପାତାଳରେ ଥିଲେ । ଭଗବାନ

କାର୍ତ୍ତିକ ଏହି ଅମାବାସ୍ୟା ଦିନ ଲକ୍ଷ୍ମୀଙ୍କୁ ଉଦ୍ଧାର କରି ମର୍ତ୍ତ୍ୟବୈକୁଣ୍ଠକୁ ଆଣିବାରୁ ମର୍ତ୍ତ୍ୟବାସୀ ଆନନ୍ଦରେ ଦୀପ ଜାଳି ଉଲ୍ଲାସ ଚିତ୍ତରେ ବିଭୋର ହୋଇଉଠିଥିଲେ । ଉକ୍ତ ଦିନ ଲକ୍ଷ୍ମୀଙ୍କୁ ପୂଜାକରି ନିଜର ସୁଖ ସମୃଦ୍ଧି ପାଇଁ କ୍ଷମା ପ୍ରାର୍ଥନା କରାଯାଇଥାଏ । ଏହି ସୁଦିନରେ ଶ୍ମଶାନକାଳୀଙ୍କୁ ପୂଜାକରି ମର୍ତ୍ତ୍ୟବାସୀ ଆଶୀର୍ବାଦ ଭିକ୍ଷା କରିଥାନ୍ତି ।

'ଅଞ୍ଜନାଦ୍ରିନିଭାଂ ଦେବୀ ଶ୍ମଶାନାଳୟ ବାସିନାଂ
ରକ୍ତନେତ୍ରାଂ ମୁକ୍ତକେଶୀଂ ଶୁଷ୍କମାଂସାତି ଭୈରବାଂ ।
ପିଙ୍ଗାକ୍ଷୀ ବାମ ହସ୍ତେନ ମଦ୍ୟପୂର୍ଣ୍ଣ ସମାସଙ୍କ
ସଦ୍ୟଃ କୃତଶରୋ ଦକ୍ଷହସ୍ତେନ ଦଧିତାଂ ଶିବାଂ ।'

ଜୈନତୀର୍ଥଙ୍କର ବର୍ଦ୍ଧମାନ ମହାବୀର କାର୍ତ୍ତିକ ମାସ ଚତୁର୍ଦ୍ଦଶୀ ଦିନ ନିର୍ବାଣ ପ୍ରାପ୍ତ ହୋଇଥିବାରୁ ଜୈନଧର୍ମାବଲମ୍ବୀମାନେ ଦୀପାବଳୀ ଉତ୍ସବକୁ ଆନନ୍ଦ ସହକାରେ ପାଳନ କରନ୍ତି । ସ୍ୱାମୀ ଦୟାନନ୍ଦ ସରସ୍ୱତୀ ଏହି ଦିନ ଦିବ୍ୟଜ୍ଞାନ ପାଇଁ ମହର୍ଷି ଭାବେ ଖ୍ୟାତି ଲାଭ କରିଥିଲେ । ଶିଖ୍ ଭାଇଭଉଣୀମାନେ ମଧ ଷଷ୍ଠଗୁରୁ ହରଗୋବିନ୍ଦଙ୍କ ସ୍ମୃତିରେ ଦୀପଜାଳି ସ୍ୱାଗତ ଜଣାଇବା ସଂଗେସଂଗେ ବିଶ୍ୱବାସୀଙ୍କର ମଙ୍ଗଳ କାମନା କରିଥାନ୍ତି । ରାଜା ବିକ୍ରମାଦିତ୍ୟ କାର୍ତ୍ତିକ ଅମାବାସ୍ୟା ତିଥିରେ ରାଜସିଂହାସନ ଆରୋହଣ କରିଥିବାରୁ ଉଜ୍ଜୟିନୀବାସୀ ପ୍ରଦୀପ ପ୍ରଜ୍ଜ୍ୱଳନ କରିଥାନ୍ତି । ଇନ୍ଦ୍ରଙ୍କ କୋପରୁ ଗୋପବାସୀଙ୍କୁ ଶ୍ରୀକୃଷ୍ଣ ନିଜର କାରାଗ୍ରେ ଗିରିଗୋବର୍ଦ୍ଧନକୁ ଟେକି ଏହି ଶୁଭ ଦିନରେ ଗୋପବାସୀଙ୍କୁ ରକ୍ଷା କରିଥିଲେ ।

ଆଲୋକ ହିଁ ସତ୍ୟ, ସତ୍ୟ ହିଁ ଭଗବାନ । ଭଗବାନ ହିଁ ସର୍ବତ୍ର ବିଦ୍ୟମାନ । ଏଣୁ ମନୁଷ୍ୟ ପ୍ରାର୍ଥନା କରେ, 'ଅସତୋ ମା ସଦ୍‌ଗମୟ- ତମସୋ ମା ଜ୍ୟୋତିର୍ଗମୟ, ମୃତ୍ୟୋର୍ମା ଅମୃତ ଗମୟ ।'

ଜୀବନରୁ ଅମାଅନ୍ଧକାର ଦୂର ହେଉ । ନୂତନ ଆଲୋକବର୍ତ୍ତିକା ସଭିଙ୍କୁ ସ୍ପର୍ଶ କରୁ । କାଳୀଙ୍କ ପୂଜା ପ୍ରତି ମାନବ ପାଇଁ ଶୁଭଙ୍କର ହେଉ- ଏହା ହିଁ କାମନା ।

'ଦୀପଂ ଜ୍ୟୋତିଃ ପରଂବ୍ରହ୍ମ
ଦୀପଂ ଜ୍ୟୋତି ଜନାର୍ଦ୍ଦନ
ଦୀପଂ ଜ୍ୟୋତି ହରେତେ ପାପଂ
ସନ୍ଧ୍ୟା ଦୀପଂ ନମୋସ୍ତୁତେ ।'



# ବୁଦ୍ଧଂ ଶରଣଂ ଗଚ୍ଛାମି

"ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ
ଅଭ୍ୟୁତ୍‌ଥାନ ମଧର୍ମସ୍ୟ ତଦାତ୍ମନଂ ସୃଜାମ୍ୟହମ
ପରିତ୍ରାଣାୟ ସାଧୁନାଂ ବିନାଶାୟଂ ଚ ଦୁଷ୍କୃତମ
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।"

'ଯା ଏକ ଶ୍ରେୟସ୍କରଃ ସ ଏବ ଧର୍ମଶବ୍ଦେନୋଚ୍ୟତେ,' ପ୍ରାଣୀର ମଂଗଳ ନିମିତ୍ତ ଯୁଗେଯୁଗେ ଧର୍ମର ଗ୍ଲାନି ଘଟିଲେ ତା'ର ପୁନଃ ପ୍ରତିଷ୍ଠା ନିମନ୍ତେ ଦୁଷ୍ଟ ଜନଙ୍କର ବିନାଶ ଓ ସାଧୁ ସନ୍ଥମାନଙ୍କୁ ପରିତ୍ରାଣ ଦେବା ନିମନ୍ତେ ଧରାବୁକୁରେ ଭଗବାନ ଅବତୀର୍ଣ୍ଣ ହୁଅନ୍ତି । ବିଶ୍ୱପ୍ରସିଦ୍ଧ ସନାତନ ଧର୍ମର ମୂଳଉତ୍ସ ଧର୍ମଗ୍ରନ୍ଥ ଶ୍ରୀମଦ୍ ଭଗବତ୍ ଗୀତାରେ ପରିପ୍ରକାଶ ଧର୍ମସଂସ୍ଥାପନ ପାଇଁ ଧରାରେ ଆବର୍ତ୍ତୀନ ହେଉଥିବା ଗାଥା କେବଳ ଭାରତୀୟ ହିନ୍ଦୁ ସମାଜ ପାଇଁ ନିର୍ଦ୍ଦିଷ୍ଟ ନୁହେଁ । ଏହା ସର୍ବ ବିଶ୍ୱଜନିତ ଓ ସର୍ବବ୍ୟାପକ । ଦେଖିବାକୁ ଗଲେ ମହମଦ୍, ଶଙ୍କର, ବୁଦ୍ଧ, ମହାବୀର, ନାନକ, ଯୀଶୁ ଏବଂ ଆଲେଖ ସ୍ୱାମୀ ଆଦି ଧରାବୁକୁରେ ଜନ୍ମଗ୍ରହଣ କରିଥିବା ମହାପୁରୁଷମାନେ ଭଗବାନଙ୍କର ଏକଏକ ଅବତାର ଭାବେ ଗ୍ରହଣ କରାଯାଏ ।

ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ଆର୍ଯ୍ୟ ସଂସ୍କୃତିକୁ ରକ୍ଷା କରିବା ପାଇଁ ପୂଣ୍ୟଭୂମି ଭାରତମାତାର କୋଳରେ ଜନ୍ମଗ୍ରହଣ କଲେ ଖ୍ରୀ:ପୂ ୫୬୦ରେ ବୌଦ୍ଧ ଧର୍ମର ପ୍ରବର୍ତ୍ତକ

ଗୌତମ ବୁଦ୍ଧ । ଗୌତମ ବୁଦ୍ଧ ବୈଶାଖ ପୂର୍ଣ୍ଣିମା ଦିନ କ୍ଷତ୍ରିୟ ଶକ୍ୟ ବଂଶର ହିମାଳୟ ପର୍ବତର ପାଦ ଦେଶରେ ଜନ୍ମ ଗ୍ରହଣ କରିଥିଲେ । ଅବସ୍ଥିତ କପିଳବସ୍ତୁ ନଗରୀର ଲୁମ୍ବିନ୍ ଉଦ୍ୟାନରେ ଭୂମିଷ୍ଠ ହେବାର ତଥ୍ୟ ଇତିହାସ କହେ । ଗୌତମଙ୍କର ପିତା ଶୁଦ୍ଧୋଦନ ଓ ମାତା ମାୟାଦେବୀ ଥିଲେ । ମାୟାଦେବୀ ପ୍ରଥମ ପୁତ୍ରଙ୍କ ଜନ୍ମ ନିମିତ୍ତ ପିତାଙ୍କ ଗୃହ 'ଦେବଦତ୍ତ' ଯାଉଥିବା ସମୟରେ ବାଟରେ ଏକ ଶାଳବୃକ୍ଷ ତଳେ ଗୌତମଙ୍କୁ ଜନ୍ମ ଦେଇଥିଲେ । ଏହା ବୌଦ୍ଧ ଗ୍ରନ୍ଥ "ସୁତନିପାତ"ରେ ବର୍ଣ୍ଣିତ ।

ଗୌତମ ବୁଦ୍ଧଙ୍କର ପିଲାଦିନୁ ସଂସାର ପ୍ରତି ଆସକ୍ତି ନଥିଲା । ସଦାସର୍ବଦା ସେ ଚିନ୍ତାମଗ୍ନ ରହୁଥିଲେ । ଏଣୁ ତାଙ୍କ ପିତା ୧୯ ବର୍ଷ ବୟସରେ ଶାକ୍ୟବଂଶର ଦଣ୍ଡପାଣି ନାମକ ଜୈନୈକ ସାମନ୍ତଙ୍କର 'ଯଶୋଧାରା' ନାମ୍ନୀ ଏକ ଅପୂର୍ବ କୋମଳମତି କନ୍ୟା ସହିତ ବିବାହ କରାଇଥିଲେ । ଗୌତମ ଥରେ ପରିଭ୍ରମଣରେ ରଥର ସାରଥୀ ଛନ୍ଦକ ସହ ଯିବା ସମୟରେ ଏକ ଜରାଜୀର୍ଣ୍ଣ, ବୃଦ୍ଧ, ରୋଗୀ, ଶବ ଓ ସନ୍ନ୍ୟାସୀଙ୍କୁ ଦେଖି ତାଙ୍କ ଜୀବନରେ ପରିବର୍ତ୍ତନ ଆଣିଥିଲେ । ରାଜ ପ୍ରସାଦର ବିଳାସପୂର୍ଣ୍ଣ ଜୀବନ ତାଙ୍କୁ ଆଉ ସୁଖ ଦେଇ ପାରିଲା ନାହିଁ । ସେ ସତ୍ୟର ଅନୁସଂଧାନରେ ବାହାରି ପଡ଼ିଲେ, ଶରୀର ଥିଲେ ବୃଦ୍ଧାବସ୍ଥା ଆସିବ, ରୋଗ ଶରୀରକୁ କବଳିତ କରିବ, ମୃତ୍ୟୁ ମଧ୍ୟ ନିଶ୍ଚିନ୍ତ, କିନ୍ତୁ ସନ୍ନ୍ୟାସ ଜୀବନ ସୁଖକର, ମୁକ୍ତିର ମାଧମ । ସନ୍ନ୍ୟାସୀ କାହାର ଅମଙ୍ଗଳ ଚିନ୍ତା କରେ ନାହିଁ । ସେ ତ ସତ୍ୟର ପୂଜାରୀ ।

ଗୌତମଙ୍କ ପୁତ୍ର ରାହୁଲଙ୍କ ଜନ୍ମଉତ୍ସବ ପାଳନ ହେବା ସମୟରେ ରଥର ସାରଥୀ ଛନ୍ଦଙ୍କ ସହ ରାଜପ୍ରାସାଦ, ସ୍ତ୍ରୀ, ପୁତ୍ର ଓ ପିତାମାତାଙ୍କୁ ଛାଡ଼ି ୨୯ ବର୍ଷ ବୟସରେ ସେ ଚାଲିଲେ ଈଶ୍ୱରଙ୍କ ଅନୁସଂଧାନରେ । ଗୌତମ ଏକାକୀ ବହୁସ୍ଥାନ ପରିଭ୍ରମଣ କରିବା ପରେ ସେ ପ୍ରଥମେ ଦୁଇଜଣ ପଣ୍ଡିତ ବ୍ରାହ୍ମଣ ଅଲରାକାଲମା ଓ ରହକଙ୍କଠାରୁ ଶାସ୍ତ୍ର ଓ ଦର୍ଶନ ସମ୍ବନ୍ଧରେ ଯଥେଷ୍ଟଜ୍ଞାନ ସଂଗ୍ରହ କରିଥିଲେ । କିନ୍ତୁ ସେଥିରେ ସେ ସନ୍ତୁଷ୍ଟ ନ ହୋଇ ନିରଞ୍ଜନା ନଦୀ (ଆଧୁନିକ ଫଲଗୁରେ ସ୍ନାନ କରି ଏକ ଅଶ୍ୱତ୍ଥ ବୃକ୍ଷ ମୂଳରେ ଦୀର୍ଘ ୪୯ ଦିନ ଧ୍ୟାନମଗ୍ନ ହେବାପରେ ବୁଦ୍ଧତ୍ୱ ପ୍ରାପ୍ତ ହୋଇଥିଲେ । ଗୌତମ ସେହି ଦିନଠାରୁ ବୁଦ୍ଧ ନାମରେ ପରିଚିତ ହେଲେ । ତାଙ୍କ ଧର୍ମର ନାମ ହେଲା ବୌଦ୍ଧଧର୍ମ । ସେ ଯେଉଁଠାରେ ତପସ୍ୟା କରୁଥିଲେ ସେହି ଉରୁବିଲ୍ୱ ବୁଦ୍ଧଗୟା ନାମରେ ପ୍ରସିଦ୍ଧଲାଭ କଲା ଓ ଅଶ୍ୱତ୍ଥ ବୃକ୍ଷ ବୋଧିଦ୍ରୁମ ନାମରେ ଖ୍ୟାତ । ବୁଦ୍ଧଦେବ ପ୍ରଥମେ କାଶୀ ନିକଟବର୍ତ୍ତୀ ସାରନାଥଠାରେ ତାଙ୍କର ସତ୍ୟବାଣୀକୁ ପ୍ରଚାର କଲେ । ଏହି ପ୍ରଥମ ପ୍ରଚାରକୁ ଧର୍ମ ଚକ୍ର ପ୍ରବର୍ତ୍ତନ ବୋଲି କୁହାଯାଏ ।

ବୌଦ୍ଧଧର୍ମାଲମ୍ବୀଙ୍କ ପାଇଁ ଲୁମ୍ବିନୀ ଏକ ପବିତ୍ର ଧର୍ମ ପୀଠସ୍ଥଳୀ । ଗୌତମ ବୌଦ୍ଧତ୍ୱ ପ୍ରାପ୍ତି (୩୫ ବର୍ଷ ବୟସରେ), ବୈଶାଖ ପୂର୍ଣ୍ଣିମା ଦିନ ପାଇଥିଲେ ଏବଂ ୮୦ ବର୍ଷ ବୟସରେ ପୁନଶ୍ଚ ବୈଶାଖ ପୂର୍ଣ୍ଣିମା ଦିନ ବର୍ତ୍ତମାନର ଉତ୍ତର ପ୍ରଦେଶ ପ୍ରାଚୀନ ମଲ୍ଲଙ୍କ ରାଜ୍ୟ ଅନ୍ତର୍ଗତ କୁଶୀନାଠାରେ ତାଙ୍କର ମହାନିର୍ବାଣ ହୋଇଥିଲା । ଦୀର୍ଘଦୀନ ଧରି ସେ ତାଙ୍କର ଅମରବାଣୀକୁ (୪୫ ବର୍ଷ) ବୁଲିବୁଲି ପଦବ୍ରଜରେ ପଚାର କରିଥିଲେ । ଗୌତମଙ୍କ ପ୍ରଧାନତଃ ୪ଟି ସତ୍ୟର ମାର୍ଗ ପ୍ରକାଶ କରୁଥିଲେ ।

୧. ମନୁଷ୍ୟର ଜୀବନ ଦୁଃଖ ପୂର୍ଣ୍ଣ ଏବଂ ସେଗୁଡ଼ିକ ଜରା, ବ୍ୟାଧି ଓ ମୃତ୍ୟୁ ।

୨. କାମନା ହିଁ ସକଳ ଦୁଃଖର କାରଣ ।

୩. କାମନାର ବିନାଶରେ ଦୁଃଖର ବିନାଶ ।

୪. ଶୁଦ୍ଧପୁତ ଓ ନୀତିନିୟମରେ ଜୀବନଯାପନ କଲେ କାମନାର ବିନାଶ ଘଟି ମନୁଷ୍ୟ ମୋକ୍ଷପ୍ରାପ୍ତି ହୋଇଥାଏ ।

ନିର୍ବାଣ ଓ ଚରମରାନୁଶାସନ ଗ୍ରହଣ କରିବା ପ୍ରତି ମାନବ ପାଇଁ ନିତାନ୍ତ ଆବଶ୍ୟକ ।

୧. ଜୀବ ହତ୍ୟା କର ନାହିଁ, ୨. ବ୍ୟଭିଚାର କର ନାହିଁ, ୩. ଚୋରି କର ନାହିଁ, ୪. ନିଜଠାରେ ଦୈବୀଶକ୍ତି ଆରୋପ କରନାହିଁ ।

ଅହିଂସା ପରମଧର୍ମ, ହିଂସା ପରମ ବ୍ୟାଧି ଓ ମହାପାପ, ଗୌତମ ପୁଦ୍ଧ ପୁନର୍ଜନ୍ମ ଓ କର୍ମଫଳ ଉପରେ ବିଶ୍ୱାସ ରଖିଥିଲେ । କାମନାରୁ ନିବୃତ୍ତ ନ ହେଲେ ମନୁଷ୍ୟ ବିଭିନ୍ନ ଜନ୍ମଲାଭ କରି ନାନାପ୍ରକାର ଦୁଃଖ ଯନ୍ତ୍ରଣା ଭୋଗ କରେ । ଏଣୁ ମନୁଷ୍ୟର ପରବର୍ତ୍ତୀ ଜନ୍ମ ନିଜର କର୍ମଫଳ ଉପରେ ନିର୍ଭର କରିଥାଏ ।

ବୌଦ୍ଧଧର୍ମାବଲମ୍ବୀମାନଙ୍କର ପବିତ୍ର ଧର୍ମଗ୍ରନ୍ଥ, 'ତ୍ରିପିଟକ' । ତ୍ରିପିଟକ ମଧ ୩ ଭାଗରେ ବିଭକ୍ତ ଯଥା- ୧. ସୂତ୍ରପିଟକ, ୨. ବିନୟପିଟକ, ୩. ଅଭିଧର୍ମ ପିଟକ । ୧. ସୂତ୍ର ପିଟକରେ ବୁଦ୍ଧଦେବଙ୍କର ଉପଦେଶ, ମୁଖ ନିସୃତ ବାଣୀ, ୨. ବିନୟ ପିଟକ, ୩. ବୌଦ୍ଧ ଦର୍ଶକ ଅଭିଧର୍ମ ପିଟକରେ ସନ୍ନିବେଶିତ ହୋଇଅଛି । ବୌଦ୍ଧ ଧର୍ମାଲମ୍ବୀମାନଙ୍କର ଜାତକ ଏକ ଧର୍ମଗ୍ରନ୍ଥ ।

ବୁଦ୍ଧଦେବ ସମଗ୍ରମାନବ ଜାତିକୁ ଆପଣେଇ ନେବାକୁ ଯାଇ ପ୍ରକାଶ କରିଥିଲେ ଯେଉଁଠି ଶାନ୍ତି, ସହିଷ୍ଣୁତା ଓ ସଦ୍‌ଭାବନା ସେଠି ସତ୍ୟର ଜୟ ସୁନିଶ୍ଚିତ । ହିଂସା, ଦ୍ୱେଷ, ଘୃଣା ପ୍ରଭୃତି ମନୋବୃତ୍ତି ପରିତ୍ୟାଗ କରିବା ଉଚିତ୍ । ମୈତ୍ରି, ପ୍ରେମ, କରୁଣା କ୍ଷମା ଆଦି ଗୁଣ ମନୁଷ୍ୟଠାରେ ବିଦ୍ୟମାନହେବା ନିତାନ୍ତ ଜରୁରୀ । ବୌଦ୍ଧ

ଧର୍ମର ଧର୍ମଗ୍ରନ୍ଥ "ତ୍ରିପିଟକରେ" ପ୍ରକାଶିତ ମନୁଷ୍ୟ ସଦାସର୍ବଦା ଚରମ ପନ୍ଥା ପରିତ୍ୟାଗ କରି, ମଧ୍ୟମ ପନ୍ଥା ଗ୍ରହଣ କରିବା ଉଚିତ । ଏଣୁ ବୁଦ୍ଧଦେବ ଅଷ୍ଟାଙ୍ଗ ମାର୍ଗର ସିଦ୍ଧିତତ୍ତ୍ୱର ଉପକାରିତା ବିଷୟରେ ଉଲ୍ଲେଖ କରିଛନ୍ତି । ୧. ସତ୍ କର୍ମ, ୨. ସତ୍ ଚିନ୍ତା, ୩. ସତ୍ ପ୍ରୀତି, ୪. ସତ୍ ସଂକଳ୍ପ, ୫. ସତ୍ ଆଚରଣ, ୬. ସତ୍ ଉଚ୍ଚାରଣ, ୭. ସତ୍ ଉଦ୍ଦେଶ୍ୟ ଓ ୮. ସତ୍ ପ୍ରଚେଷ୍ଟା । ଏହା ମନୁଷ୍ୟର ଏକାନ୍ତ କାମ୍ୟ ହେବା ଉଚିତ । ବୌଦ୍ଧଧର୍ମରେ ମଦ, ମାଂସ ମତ୍ସ୍ୟ ଇତ୍ୟାଦି ଭକ୍ଷଣ ନିଷିଦ୍ଧ ଥିଲା । "ଧର୍ମପ୍ରଦ" ଗ୍ରନ୍ଥରେ ସମସ୍ତ ଉପଦେଶମାନ ସନ୍ନିବେଶିତ ହୋଇଅଛି ।

ବୁଦ୍ଧଦେବଙ୍କ ଜନ୍ମର ୩୧୭ ବର୍ଷ ପରେ ସମ୍ରାଟ ଅଶୋକ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇ ପବିତ୍ର ପୀଠସ୍ଥଳୀକୁ ବିଜେ କରିଥିଲେ । ନେପାଳର ତରାଇ ଅଞ୍ଚଳରେ ବୁଦ୍ଧ ଦେବଙ୍କ ଜନ୍ମ ସଂପର୍କୀୟ ଏକ ଶିଳାଲେଖ ୧୮୯୬ ମସିହାରେ ଆବିଷ୍କୃତ ହୋଇଅଛି । ସୁସମ୍ରାଟ ଅଶୋକ ସେ ସ୍ଥାନକୁ ଯାଉଥିବାର ପ୍ରମାଣ ମିଳେ । ଆଶ୍ଚର୍ଯ୍ୟର କଥା ଏହି ଶିଳାଲେଖ ଆବିଷ୍କୃତ ହେବାର ୩୨ ବର୍ଷ ପରେ ଠିକ୍ ସେହିପରି ଏକ ଘୋଷଣାନାମା ବହନ କରୁଥିବା ଶିଳାଫଳକ ଭୁବନେଶ୍ୱର ନିକଟବର୍ତ୍ତୀ କପିଳେଶ୍ୱର ଗ୍ରାମର ଏକ ଚାଷୀର କୁଡ଼ିଆଘର ମାଟିକାନ୍ଥରୁ ମିଳିଥିଲା । ଉକ୍ତ ଫଳକଟିକୁ ବୀରେନ୍ଦ୍ର କୁମାର ରାଏ ନାମକ ଜଣେ ଠିକାଦାର କ୍ରୟ କରି ନିଜ ସଂଗ୍ରହାଳୟରେ ରଖିଥିଲେ । ପରେ ତାହାକୁ କଲିକତାର ଆଶୁତୋଷ ସଂଗ୍ରହାଳୟକୁ ବିକ୍ରି କରି ଦେଇଥିଲେ । ପ୍ରଥମେ ଏହାକୁ କଲିକତା ବିଶ୍ୱ ବିଦ୍ୟାଳୟର ଗବେଷକ ହରେନ ଚନ୍ଦ୍ର ହଲଦାର ଦେଖିବାକୁ ପାଇଥିଲେ । ସେ ଏ ସଂପର୍କରେ ବଂଗଳାର ମାସିକ ପତ୍ରିକା 'ପ୍ରଭାସୀ'ରେ ୧୯୨୮ ମସିହା ଜୁଲାଇ ମାସରେ ଏହି ସମ୍ପର୍କିୟ ପ୍ରବନ୍ଧ ପ୍ରକାଶ ପାଇବା ହେତୁ ଐତିହାସିକମାନଙ୍କ ଦୃଷ୍ଟିଆକର୍ଷଣ କରିଥିଲା । ଏହି ଶିଳାଲେଖର ବ୍ୟବହୃତ ଲିପି ଅଶୋକ କାଳୀନ 'ବ୍ରାହ୍ମୀ' ଏବଂ ଏଥିରେ ଚୁନ୍ଦ୍ରିୟ ନାମକ ଏହାର ଲିପିକାର ଖରୋଷ୍ଟ୍ରୀ ଲିପିରେ ତଳେ ସ୍ୱାକ୍ଷର ଥିବାର ଜଣାଯାଇଥିଲା । ଏହି କାରଣରୁ କେତେକ ଗବେଷକ କପିଳବସ୍ତୁର ଲୁମ୍ବିନୀ ଗ୍ରାମ ନୁହେଁ ବୁଦ୍ଧଙ୍କ ଜନ୍ମ ଭୁବନେଶ୍ୱର ନିକଟବର୍ତ୍ତୀ କପିଳେଶ୍ୱର ଗ୍ରାମକୁ ବୁଦ୍ଧଦେବଙ୍କ ଜନ୍ମସ୍ଥାନ ଭାବରେ ଗ୍ରହଣ କରିଥାନ୍ତି । କିନ୍ତୁ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀରେ ସମ୍ରାଟ କପିଳେଶ୍ୱର(କପିଳେନ୍ଦ୍ରଦେବ)ଙ୍କ ଦ୍ୱାରା କପିଳେଶ୍ୱର ଗ୍ରାମଟି ସ୍ଥାପିତ ହୋଇଥିଲା । ଏଣୁ ପ୍ରାଚୀନତା ଦୃଷ୍ଟିଭଙ୍ଗୀରୁ ବିଚାର କଲେ ବୁଦ୍ଧଦେବଙ୍କ ଜନ୍ମସ୍ଥାନ କପିଳେଶ୍ୱର ହୋଇ ନପାରେ ।

ବିନୟ ପିଟକ ଓ ବୌଦ୍ଧଜାତକ ଗ୍ରନ୍ଥ ଅନୁସାରେ ଉତ୍କଳଜନ- ପଦର ତପସୁ ଓ ଭଲ୍ଲିକ ଏହି ଦୁଇ ଜଣ ବଣିକ ସର୍ବପ୍ରଥମେ ବୌଦ୍ଧଧର୍ମରେ ଦୀକ୍ଷିତ

ହୋଇଥିଲେ । ପୌରାଣିକ କିମ୍ବଦନ୍ତୀରୁ ଜଣାଯାଏ କଳିଙ୍ଗଠାରୁ ଉତ୍କଳପ୍ରାଚୀନ କଳିଙ୍ଗର ଭାଷା ଥିଲା 'ପାଲ୍ଲି' । ବୁଦ୍ଧଦେବ 'ପାଲ୍ଲି' ଭାଷାରେ ତାଙ୍କ ଧର୍ମପ୍ରଚାର କରିଥିଲେ । ବଣିକ ଦ୍ୱୟ ବ୍ରହ୍ମଦେଶରୁ ବାଣିଜ୍ୟ ସାରି ଫେରୁଥିବା ସମୟରେ ନିରଂଜନା ନଦୀ ତଟରେ ଅଶ୍ୱତ୍ଥ ବୃକ୍ଷ ସ୍ଥଳରେ ଗୌତମ ବୌଦ୍ଧତ୍ୱ ପ୍ରାପ୍ତି କରି କ୍ଷୁଧିତ ଅବସ୍ଥାରେ ଥିବାର ଦେଖିଥିଲେ । ସେମାନେ ବୁଦ୍ଧଙ୍କୁ ଖାଇବା ପାଇଁ କିଛି ଆରିସା ପିଠା ଓ ମହୁ ପ୍ରଦାନ କରିଥିଲେ । ତାକୁ ସେବନ କରି ବୁଦ୍ଧ ସନ୍ତୁଷ୍ଟ ହୋଇ ସେମାନଙ୍କୁ ନିଜର ସିଦ୍ଧିପ୍ରାପ୍ତି ବାଣୀକୁ ଶୁଣାଇ ଥିଲେ । ଏହି ବିଷୟ ବିନୟ ପିଟକରେ ଓ ବୌଦ୍ଧଜାତକ ଗ୍ରନ୍ଥରେ ଉଲ୍ଲେଖ ଅଛି । ତପସୁ ଓ ଭଲ୍ଲିକ ବୁଦ୍ଧଙ୍କ ନଖ ଓ କେଶ ନେଇ ନିଜ ରାଜ୍ୟରେ ନଖସ୍ତୁପ ଓ କେଶସ୍ତୁପ ନିର୍ମାଣ କରିଥିଲେ ।

ବୁଦ୍ଧଦେବଙ୍କ ଦେହାନ୍ତ ଜୁଇରୁ 'ଅରକସେମା' ନାମକ ଭିକ୍ଷୁ ବୁଦ୍ଧଙ୍କ ବାମ ପାଞ୍ଚ ନଖକୁ ଆଡ଼ମ୍ବର ସହିତ କଳିଙ୍ଗକୁ ଆଣିଥିଲେ । ସମ୍ରାଟ ବ୍ରହ୍ମଦତ୍ତଙ୍କୁ ଏହା ପ୍ରଦାନ କରିଥିଲେ । ମଲ୍ଲମାନେ ମଧ୍ୟ ବୁଦ୍ଧଦେବଙ୍କ ଚିତାର ଭସ୍ମ ଓ ଅସ୍ଥି ସଂଗ୍ରହ କରି କଳିଙ୍ଗକୁ ଆଣିଥିଲେ । ରାଜାଙ୍କ ଅଧୀନସ୍ଥ ଥିବା ଏକ କ୍ଷୁଦ୍ର ରାଜ୍ୟର ରାଜକୁମାରଙ୍କ ପ୍ରଶଂସାରେ ବ୍ରହ୍ମଦତ୍ତ ଅଭିଭୂତି ହୋଇ ପଡ଼ିଥିଲା । ଉକ୍ତ ପଦାର୍ଥକୁ ସେ ସୁବର୍ଣ୍ଣ ପାତ୍ରରେ ରଖି ପୂଜା କରିବାକୁ ଲାଗିଲେ । ଏପରିକି ସେ ମଧ୍ୟ ସେ ରାଜ୍ୟର ରାଜଧାନୀର ନାମ ରଖିଲେ 'ଦନ୍ତପୁର' । ରାଜଧାନୀର ମଧ୍ୟସ୍ଥଳରେ ବୁଦ୍ଧଙ୍କ ସମ୍ମାନାର୍ଥେ ଏକ ସ୍ତୁପ ନିର୍ମାଣ କଲେ । ଯାହାଫଳରେ କଳିଙ୍ଗବାସୀ ବୌଦ୍ଧଧର୍ମରେ ଉଦ୍‌ବୁଦ୍ଧ ହୋଇଥିଲେ । ସମ୍ରାଟ ଅଶୋକଙ୍କ ଭାଇ 'ତିସସ' ବୌଦ୍ଧଧର୍ମରେ ଦୀକ୍ଷିତ ହୋଇ ଏହାର ପ୍ରସାର ନିମନ୍ତେ କଳିଙ୍ଗରେ ଶେଷ ଜୀବନ ଅତିବାହିତ କରିଥିବାର ଜଣାଯାଏ ।

ଖ୍ରୀ:ପୂ ୨୬୧ରେ ମୌର୍ଯ୍ୟ ସମ୍ରାଟ ଆକ୍ରମଣ କରିଥିଲେ । କଳିଙ୍ଗ ଏହି ଯୁଦ୍ଧରେ ଏକଲକ୍ଷ ସୈନିକ ବିରଗତି ପ୍ରାପ୍ତ ହୋଇଥିଲେ । ତିନି ଲକ୍ଷ ଲୋକ ଯୁଦ୍ଧରେ ଆହତ ହୋଇଥିଲେ ଏବଂ ଦେଢ଼ଲକ୍ଷ ଲୋକ ବନ୍ଦୀ ହୋଇଥିଲେ । କଳିଙ୍ଗର ହଜାର ହଜାର ନୀରିହ ଜନସାଧାରଣ ମହିଳା ଓ ଶିଶୁ ଅନାହାରରେ ମୃତ୍ୟୁବରଣ କରିଥିବାର ଅଶୋକଙ୍କ ତ୍ରୟୋଦଶ ଶିଳାନୁଶାସନରୁ ଏହା ଜଣାଯାଏ । ଏହି ଯୁଦ୍ଧର ଭୟାବହତା ଅଶୋକଙ୍କୁ ମର୍ମାହତ କଲା । ଅଶୋକ ଚଣ୍ଡାଶୋକରୁ ଧର୍ମାଶୋକରେ ପରିଣତ ହେଲେ ।

ଏହା ପୃଥିବୀ ଇତିହାସରେ ଏକ ଯୁଗାନ୍ତକାରୀ ଘଟଣା । ସେ ବୁଝିପାରିଲେ ଅସ୍ତ୍ରର ଜୟ ପ୍ରକୃତ ଜୟ ନୁହେଁ, ମନୁଷ୍ୟ ହୃଦୟକୁ ଜୟ କରିବା ହିଁ ପ୍ରକୃତ ଜୟ । ସେ ଦୟାନଦୀ କୂଳରେ (ଭୁବନେଶ୍ୱର ଠାରୁ ୧୦ କି.ମି) ଅବସ୍ଥିତ ଧଉଳି ପାହାଡ଼

ପାଖରେ ଥିବା ଓଡ଼ିଆ ବୌଦ୍ଧ ସନ୍ନ୍ୟାସୀ 'ଉପଗୁପ୍ତ'ଙ୍କଠାରୁ ଦୀକ୍ଷା ଗ୍ରହଣ କରି ବୌଦ୍ଧଧର୍ମରେ ଦୀକ୍ଷିତ ହେଲେ । ବୌଦ୍ଧଧର୍ମର ଶ୍ରେଷ୍ଠ ନିଦର୍ଶନ ଅହିଂସା ଓ କରୁଣା ନୀତି ତାଙ୍କ ଆଦର୍ଶର ମୂଳଲକ୍ଷ୍ୟ ହୋଇଗଲା ।

ସମ୍ରାଟ ଅଶୋକ ନିଜର କନ୍ୟା ସଂଘମିତ୍ରା ଓ ପୁତ୍ର ମହେନ୍ଦ୍ରଙ୍କୁ ବୌଦ୍ଧଧର୍ମର ପ୍ରଚାର ଓ ପ୍ରସାର କରିବା ପାଇଁ ସିଂହଳ ପଠାଇଥିଲେ । ବର୍ମାକୁ ବହୁ ସଂଖ୍ୟକ ବୌଦ୍ଧ ଭିକ୍ଷୁଙ୍କୁ ପଠାଯାଇଥିବାର ଜଣାଯାଏ । ସମଗ୍ର ବହ୍ମ ଦେଶବାସୀ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ । ବ୍ରହ୍ମଦେଶ ସଂପର୍କରେ ଆସି ଚୀନ୍, ଜାପାନ, କୋରିଆ, ଥାଇଲ୍ୟାଣ୍ଡ ଦେଶମାନଙ୍କରେ ବୌଦ୍ଧଧର୍ମର ପ୍ରସାର ହୋଇଗଲା । ଅଶୋକ ମଧ୍ୟ ବୌଦ୍ଧଧର୍ମର ପ୍ରଚାର ଓ ପ୍ରସାର ପାଇଁ ଧର୍ମଦୂତମାନଙ୍କୁ ପ୍ରେରଣ କରି ଇତିହାସରେ ଏକ ଯାଜ୍ୱଲ୍ୟମାନ ଶ୍ରେଷ୍ଠ ମହାପୁରୁଷ ଭାବରେ ଖ୍ୟାତିଲାଭ କରିପାରିଥିଲେ ।

ଅଦ୍ୟାବଧି ୨୨୧ଟି ଦେଶରେ ବୌଦ୍ଧଧର୍ମାବଲମ୍ବୀ ଲୋକଙ୍କୁ ଦେଖିବାକୁ ମିଳୁଛି । ସେମାନଙ୍କ ସଂଖ୍ୟା ପ୍ରାୟ ୪୨ କୋଟି ୫୦ ଲକ୍ଷରୁ ଊର୍ଦ୍ଧ୍ୱ । ବୌଦ୍ଧ ଧର୍ମ ପ୍ରଚାରକ ଓ ଭିକ୍ଷୁମାନଙ୍କ ପାଇଁ ବୌଦ୍ଧ ସଂଘ ପ୍ରତିଷ୍ଠା କରାଯାଇଥିଲା । ଏଥିରେ ଉଭୟ ସ୍ତ୍ରୀ ଓ ପୁରୁଷ ସଭ୍ୟ ହୋଇ ପାରୁଥିଲେ । ମାତ୍ର ସଂକ୍ରମଣ ରୋଗୀ, ଶିଶୁ, ଅପରାଧି ଓ କୁପଥଗାମୀ ବ୍ୟକ୍ତି ସଭ୍ୟ ହୋଇ ପାରୁନଥିଲେ । ୧୮ ବର୍ଷରୁ କମ୍ ବ୍ୟକ୍ତି ସଂଘରେ ଯୋଗଦାନ ପାଇଁ ବାରଣ କରାଯାଇଥିଲା । ସଂଘ ଉପରେ ଏକ ସାଧାରଣ ପରିଷଦ ଥିଲା । ଏଥିରେ ଧର୍ମ ସଂପର୍କୀତ ନିୟମମାନ ପ୍ରଣୟନ କରାଯାଉଥିଲା । ବୌଦ୍ଧଧର୍ମର ତ୍ରିରତ୍ନ

"ବୁଦ୍ଧଂ ଶରଣଂ ଗଚ୍ଛାମି
ଧର୍ମଂ ଶରଣଂ ଗଚ୍ଛାମି
ସଙ୍ଘଂ ଶରଣଂ ଗଚ୍ଛାମି ।"



# ଜୀବନ ଗଠନ ଓ ବ୍ରହ୍ମ ଦର୍ଶନ

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁ ଶ୍ଚ ସଖା ତ୍ୱମେବ
ତ୍ୱମେବ ବିଦ୍ୟାଂ ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ॥ – (ପାଣ୍ଡବ ଗୀତା)

ପରଂବ୍ରହ୍ମଙ୍କ ଶ୍ରେଷ୍ଠ ସୃଷ୍ଟି ଅମୃତର ସନ୍ତାନ ମାନବ । ଏ ଶରୀର ରଜବୀର୍ଯ୍ୟର ସମିଶ୍ରଣରେ ପ୍ରଥମେ ଏକ ଜଳବିମ୍ବ ଆକାର ଧାରଣ କରେ । ଏହି ଫୋଟକାଟି ୨/୪ ଦିନ ପରେ କଠିନ ହୋଇ ବରକୋଳି ଆକାର ଧାରଣ କରେ । ଏହାକୁ 'ତାଳୁ' କୁହାଯାଏ । ଏଥିରେ ଜୀବାତ୍ମା ଓ ପରମାତ୍ମା ବାସ କରିଥାନ୍ତି । ଏହି ସମୟରୁ ସନ୍ତାନର ଭାଗ୍ୟ ଲେଖାହୁଏ ।

"ପିତା ମାତା ସଂଯୁକ୍ତବେଳେ
ବିହି ଯାହା ଲେଖିଲା କପାଳେ ।"

ତା'ପରେ ମେରୁଦଣ୍ଡ, ମେରୁଦଣ୍ଡର ମୂଳରୁ ପଦ୍ମନାଡ଼ିର ସୂତ୍ର ପରି ଅତି ସୂକ୍ଷ୍ମରେ ତିନୋଟି ନାଡ଼ି ତଳକୁ ଲମ୍ବି ଆସେ । ଏହି ନାଡ଼ୀର କ୍ଷରିତ ସ୍ଥାନକୁ 'ତ୍ରିକୂଟ' କୁହାଯାଏ । ସେହିଠାରୁ କ୍ରମେ ଅଷ୍ଟଦ୍ୱାର ବ୍ରହ୍ମରନ୍ଧ୍ର, ଚକ୍ଷୁଦ୍ୱୟ, ନାସାଦ୍ୱୟ, କର୍ଣ୍ଣଦ୍ୱୟ, ମୁଖ ଆଦି ପୂର୍ଣ୍ଣହୋଇ ଶରୀର ସର୍ଜନା ହୁଏ । କିନ୍ତୁ ଜ୍ଞାନୀ, ବିଜ୍ଞାନୀମାନେ ଜୀବାତ୍ମା, ପିତା ଅଙ୍ଗରୁରେ ତ ଯାଇ ମାତାରଜରେ ମିଶି ଜରାୟୁ ପଦ୍ମ ମଧରେ ପଞ୍ଚଭୂତରୁ ସପ୍ତଧାତୁ ପ୍ରାପ୍ତ ହୋଇ ବ୍ରହ୍ମାତ୍ମା ସୂତ୍ରକୁ ଧାରଣ କରି ନୂତନ ଶରୀର ପ୍ରାପ୍ତ ହୁଏ । ଏହି ଶରୀର ପ୍ରତିମା ଚିତ୍ର ପ୍ରାୟ ପିତାମାତାଙ୍କ ଆକୃତି ନେଇସାରିଲେ ମାତୃଗର୍ଭରୁ ଭୂପୃଷ୍ଠକୁ ଜନ୍ମନିଏ । ମର୍ତ୍ତ୍ୟମଣ୍ଡଳରେ ପୂର୍ବ ସୁକୃତକୁ ସ୍ମରଣ କରି ପାପପୁଣ୍ୟର ଫଳ କର୍ମାନୁସାରେ ଭୋଗାଭୋଗକୁ ନେଇ ପ୍ରାପ୍ତ ହୋଇଥାଏ । ସେ ଅଜ୍ଞାନର ଆୟତ୍ତାଧୀନ ଥିବାରୁ ଜୀବାତ୍ମା ପୂର୍ବଜନ୍ମର ବୃତ୍ତାନ୍ତ ଭୁଲିଯାଏ । ଚୈତନ୍ୟ ଗୁଣରେ ବ୍ରହ୍ମ ନିର୍ଦ୍ଦେଶରେ କର୍ମଫଳ ଭୋଗ କରେ । ବ୍ରହ୍ମଜ୍ଞାନୀ ବିଶାରଦମାନେ ମାୟାକୁ ଦୂରୀଭୂତ କରୁଥିବାରୁ ପୂର୍ବଜନ୍ମ ବୃତ୍ତାନ୍ତ ସ୍ମରଣ କରି ସବୁକିଛି କରିଥାନ୍ତି । ସେ ହିଁ ପୁରୁଷୋତ୍ତମ ।

**ଦ୍ୱିବିମୌ ପୁରୁଷୌଲୋକେ କ୍ଷରଷ୍ଚାକ୍ଷର ଏବଚ**
**କ୍ଷରଃ ସର୍ବାଣି ଭୂତାନି କୂଟସ୍ଥୋଽକ୍ଷର ଉଚ୍ୟତେ ।**

ଉତ୍ତମଃ ପୁରୁଷେ ସ୍ତ୍ୱନ୍ୟଃ ପରମାତ୍ମେତ୍ୟୁ ଦାହୃତଃ
ଯୋ ଲୋକ ତ୍ରୟମାବିଶ୍ୟ ବି ଭର୍ତ୍ତ୍ୟ ବ୍ୟୟ ଈଶ୍ୱରଃ ।
(ଗୀତା- ୧୫ଶ/୧୬-୧୭)

ମନୁଷ୍ୟ ଶରୀରର ପୂର୍ଣ୍ଣାଙ୍ଗ ନିର୍ମାଣ ଦଶମାସରେ ଶେଷ ହୁଏ । ପ୍ରଥମ ମାସରେ ତାଲୁ ସହ ମୁଖମଣ୍ଡଳର ସର୍ଜନା ହେବା ସହ ଇଡ଼ା, ପିଙ୍ଗଳା, ସୁଷୁମ୍ନା (ତିନିନାଡ଼ୀ) ଓ ମେରୁଦଣ୍ଡ ନିମ୍ନକୁ ବଢ଼ି ଆସିଥାଏ । ଦୁଇ ତିନି ମାସ ମଧ୍ୟରେ କଣ୍ଠଚକ୍ର ସହ ମେରୁଦଣ୍ଡ ଆଶ୍ରୟରେ ପଞ୍ଜରା, ଅସ୍ଥି ସଞ୍ଚରିବା ସହ ହୃଦୟଚକ୍ର ନିର୍ମାଣ ହୁଏ । ଚତୁର୍ଥ ଓ ପଞ୍ଚମ ମାସରେ ମେରୁଦଣ୍ଡ ସହ ତ୍ରିନାଡ଼ୀକୁ ଧାରଣ କରି ନାଭିଚକ୍ର ଗଠିତ ହୋଇ ପ୍ରାଣବାୟୁରେ ଯାତାୟାତ ହୋଇଥାଏ । ସେହି ପ୍ରାଣବାୟୁରେ ଶବ୍ଦ ଓ ନାଦ ପ୍ରକାଶ ପାଏ । ତତ୍‌ସହ ଜୀବ ଓ ପରମର ଗତି ତାଲୁ ମୂଳରୁ ନାଭି ପର୍ଯ୍ୟନ୍ତ ଅଧଊର୍ଦ୍ଧ୍ୱ ଭାବେ (ଓଲଟ ପାଲଟ) ଶ୍ୱାସ ପ୍ରଶ୍ୱାସ ପ୍ରକାଶ ପାଏ । କ୍ରମେ କ୍ରମେ ତିନି ନାଡ଼ୀ ସାତଶହ ବାସ୍ତରି ପର୍ଯ୍ୟନ୍ତ ଶିରାପ୍ରଶିରା ନାଡ଼ୀମାନ ଅଙ୍କୁରିତ ହୋଇଥାଏ । ଏହି ପ୍ରାଣସୂତ୍ର ନାଡ଼ୀଟିକୁ ଧରି ଲିଙ୍ଗ ଚକ୍ର ନିର୍ମାଣ ହୁଏ । ସେଠୁ ମେରୁଦଣ୍ଡର ଶେଷ ସ୍ଥାନକୁ ଘେନି ଗୂହ୍ୟଚକ୍ର ପ୍ରକାଶ ପାଏ । ତହିଁରୁ ବେନି ଜାନୁ ପ୍ରକାଶ ହୋଇ ପାଦ ପର୍ଯ୍ୟନ୍ତ ବିସ୍ତାର ହୋଇଥାଏ । କ୍ରମେ ଅସ୍ଥି, ମଜ୍ଜା, ମାଂସ ଆଦି ବ୍ରହ୍ମତେଜରୁ କଠିନ ହୋଇ ବସା ରକ୍ତଶୁକ୍ରସହ ଓଜଃ ଶକ୍ତିର ବିକାଶ ହୁଏ । ଷଷ୍ଠ ଓ ସପ୍ତମ ମାସ ଶେଷ ମଧ୍ୟରେ ହସ୍ତ ଓ ପାଦର ଆଙ୍ଗୁଠି ସଂଚାରିତ ହୁଏ । କ୍ରମେ କ୍ରମେ ଷଡ଼ଚକ୍ର ଇନ୍ଦ୍ରିୟମାନଙ୍କର ଦେବତା ଆସି ବସତି ସ୍ଥାପନା କରିଥାନ୍ତି । ଆତ୍ମାକୁ ବିଷୟାଭୋଗରେ ପକାଇ ସୁଗୁଣ ପ୍ରକାଶି ଥାନ୍ତି । ପ୍ରାଣବାୟୁ ଷଡ଼ଚକ୍ର ଭେଦି ଯାତାୟାତ କରୁଥିବାରୁ ବ୍ରହ୍ମ ତେଜରେ ଶରୀରଟି ଶକ୍ତ ହୋଇଉଠେ । ଅଷ୍ଟମ ଓ ନବମ ମାସରେ ଜୀବାତ୍ମା, ପୂଜ, ଖଙ୍କାର, ନାଳ, ରକ୍ତ, ଦୁର୍ଗନ୍ଧରେ ପଡ଼ି ଘାଣ୍ଟି ହୋଇ ଘୋର ଯନ୍ତ୍ରଣା ଭୋଗ କରେ । ମାତା ପଦ୍ମ ମଧ୍ୟରେ ସେ ଊର୍ଦ୍ଧ୍ୱକୁ ମୁଖ କରି ଶୟନ କରିବା ସହ ଦୁଇହସ୍ତ ଯୋଡ଼ି ଏକ ଚିତ୍ତରେ ପରଂବ୍ରହ୍ମକୁ ସ୍ମରଣ କରେ । ଏଠି ଜୀବ ଏକବିଂଶତି ସହସ୍ର ସତ୍‌ସତବାର ଦିବାରାତ୍ରି ମଧ୍ୟରେ ନିଃଶ୍ୱାସ ନିଏ । (ହଂସୋପନିଷଦ) ଏତଦ୍ ସହ ଚର୍ମ ଢାଙ୍କୁଣୀ ପ୍ରାପ୍ତ ହୋଇ ତାଲୁ ମୂଳ ବ୍ରହ୍ମରନ୍ଧ୍ରଠାରୁ ଗୁହ୍ୟଚକ୍ର ଚେତାପ୍ରାପ୍ତି ହେବାରୁ ଭୂପୃଷ୍ଠରେ ଜନ୍ମ ନେବା ପାଇଁ ପଥ ଅନୁସରଣ କରିବାକୁ ଲାଗେ ଓ ପରଂବ୍ରହ୍ମକୁ ନିବେଦନ କରି ବାରବାର କହିଚାଲେ, ମର୍ତ୍ତ୍ୟମଣ୍ଡଳରେ ଜନ୍ମ ନେଲେ ମୁଁ ଆପଣଙ୍କର ନାମ ସ୍ମରଣ କରିବା ସହ ସତ୍ୟପଥର ପଥିକ ହେବି । ସତ୍ୟ, ଧର୍ମ, ଅହିଂସା ଓ ବ୍ରହ୍ମଚର୍ଯ୍ୟକୁ ଜୀବନର ମୂଳମନ୍ତ୍ର ଭାବେ ଗ୍ରହଣ କରିନେବି । ପ୍ରାଣୀର ନିବେଦନକୁ ପରଂବ୍ରହ୍ମ ଗ୍ରହଣ କରି ଦଶଦ୍ୱାର କବାଟ ଫିଟାଇଥାନ୍ତି । ମାତାର ପ୍ରାଣବାୟୁ ଦ୍ୱାରା ଯୋନି ପଥ ଦେଇ ଜୀବ ଧରଣୀରେ ଭୂମିଷ୍ଠ

ହୁଏ । ଏହାପରେ ଭୂଲୋକକୁ ଆସିବା ଦ୍ୱାରା ସେ ବସୁଦେବଙ୍କୁ କ୍ଷଣକ ମଧ୍ୟରେ ଭୁଲିଯାଏ ।

ପ୍ରଥମ ସମୟେ ସୁତ ମାତା ଗର୍ଭେ ହେଲା ସ୍ଥିତ
ଦଶମାସ ଯାଏ ଗର୍ଭ ଗତରେ ଥିଲା
ଗର୍ଭେ ଥିଲା ଯେତେ ଦିନ କରୁଥିଲା ବ୍ରହ୍ମଧ୍ୟାନ
ବେନିକର ଯୋଡ଼ି ପାଦେ ଭକତି ଥିଲା
ମେଦିନୀରେ ପଡ଼ି ପୁଅ ରାବଦେଲା କୁଆଁ କୁଆଁ ।
ପୂର୍ବ ଜନ୍ମ ହେତୁ ଚେତା ପାସୋରି ଦେଲା । (ଭୀମଭୋଇ)

× × ×

ଜନମ ହୋଇ ପଡ଼ିଲା ମର୍ତ୍ତ୍ୟମଣ୍ଡଳେ
କୁଆଁ ବୋଲନ୍ତେଣ ସବୁ ଗଲା ପାଶୋର । (ଯଶୋବନ୍ତ)

ଜୀବନର ସୂକ୍ଷ୍ମ ଶରୀର, ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ପ୍ରାଣ ମନ ଓ ବୁଦ୍ଧି ଏହି ସପ୍ତଦଶ ଅବୟକୁ ଧରି ଗଠିତ । ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା ଓ ଚର୍ମ ଦ୍ୱାରା ଆତ୍ମାଭୋଗ ବିଷୟମାନ ଜାଣିପାରୁଥିବାରୁ ଏହାର ନାମ ଜ୍ଞାନେନ୍ଦ୍ରିୟ । କର୍ଣ୍ଣ ଦ୍ୱାରା ଶବ୍ଦ, ଚକ୍ଷୁ ଦ୍ୱାରା ରୂପ, ନାସିକା ଦ୍ୱାରା ଗନ୍ଧ, ଜହ୍ୱା ଦ୍ୱାରା ରସ ଓ ଚର୍ମ ଦ୍ୱାରା ଶୀତ ଉଷ୍ଣ ଭୋଗ କରିଥାଏ । କର୍ଣ୍ଣର ଦେବତା ଦିକ୍ । ଚକ୍ଷୁର ଦେବତା ସୂର୍ଯ୍ୟ, ବାୟୁ ଅଟନ୍ତି । ପଞ୍ଚେନ୍ଦ୍ରିୟ ଦ୍ୱାରା ଜୀବାତ୍ମା ଶରୀର ଚାଳିତ କ୍ରିୟା ସାଧନ କରିବାକୁ କର୍ମେନ୍ଦ୍ରିୟ କୁହାଯାଏ । ଯଥା- ବାକ୍, ପାଣି, ପାଦ, ବାୟୁ, ଉପସ୍ଥ । ବାକ୍‌ର ଦେବତା ଅଗ୍ନି, ପାଣିର ଦେବତା ବାସବ, ପାଦର ଦେବତା ବିଷ୍ଣୁ, ବାୟୁର ଦେବତା ଯମ, ଉପସ୍ଥର ଦେବତା ପ୍ରଜାପତି । ବାକ୍ କହିବା କଥାର ବସ୍ତୁ, ପାଣି ହସ୍ତର କାର୍ଯ୍ୟ ଗ୍ରହଣ କରୁଥିବା ବସ୍ତୁ, ପାଦ ଗମନ, ବାୟୁ ମଳତ୍ୟାଗ, ଉପସ୍ଥ ଉପଭୋଗ କରିବା । ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡର ଦେବତାମାନେ ପ୍ରକାଶ ହୋଇ ଆତ୍ମାର କ୍ରିୟା ସାଧନ କରିଥାନ୍ତି । ପଞ୍ଚପ୍ରାଣ-ନାସା ଦ୍ୱାରା ଯେଉଁ ଶ୍ୱାସ ପ୍ରଶ୍ୱାସ ପବନ ଯାଏ ଜୀବାତ୍ମା ତାହାକୁ ଧାରଣ କରି ଇନ୍ଦ୍ରିୟମାନଙ୍କୁ ଚାଳିତ କରୁଥାଏ । ଏହି ବାୟୁ ପାଞ୍ଚଭାଗରେ ବିଭକ୍ତ । ଅଧଃ ଉର୍ଦ୍ଧ୍ୱ ଭାବରେ ଶରୀରରେ ଚଳିବାରୁ ଏହାକୁ ପଞ୍ଚପ୍ରାଣ କୁହାଯାଏ । ଯଥା- ଅପାନ, ସମାନ, ପ୍ରାଣ, ଉଦାନ, ବ୍ୟାନ ।

ଅପାନ:- ଯେଉଁ ବାୟୁ ଗୁହ୍ୟଦ୍ୱାରରେ ଅଧୋମୁଖ ହୋଇ ରହେ ତାହା ଅପାନ ବାୟୁ ଅଟେ ।

ସମାନ:- ଯେଉଁ ବାୟୁ ନାଭିମଣ୍ଡଳରେ ରହି ଖାଦ୍ୟପେୟ ରସକୁ ପରିପାକ କରି ରକ୍ତମାଂସାଦି ସପ୍ତଧାତୁ ବଣ୍ଟନ କରେ ଓ ଶେଷ ଅଂଶକୁ ମଳମୂତ୍ର ଭାବରେ ପୃଥକ କରେ ତାହାକୁ ସମାନ କୁହାଯାଏ ।

ପ୍ରାଣ:- ଯେଉଁ ବାୟୁ ହୃଦୟଠାରୁ ନାସାଗ୍ର ପର୍ଯ୍ୟନ୍ତ ଚଳୁଥାଏ ତାହାର ନାମ ପ୍ରାଣ ।

ଉଦାନ:- ପ୍ରାଣ ଦ୍ୱାରା କଣ୍ଠଚକ୍ର ଧରି କ୍ଷରାକ୍ଷର ହେଉଥିବା ବାୟୁର ନାମ ଉଦାନ ।

ବ୍ୟାନ:- ସର୍ବାଙ୍ଗ ନାଡ଼ୀ ସମୂହ ଶିରାପ୍ରଶିରାକୁ ଧରି ଯେଉଁ ବାୟୁ ବିଚରଣ କରେ ତାହାର ନାମ ବ୍ୟାନ । ଜୀବାତ୍ମାର ପାଞ୍ଚଗୋଟି ମନ ଯଥା- ପ୍ରକୃତ ମନ, ସୁମନ, କୁମନ, ବିମନ, ଅମନ ।

ପ୍ରକୃତ ମନ:- ସଂକଳ୍ପ ବିକଳ୍ପକୁ ଧରି ଯେଉଁ ମନ ପ୍ରକାଶ ପାଏ ତାହା ହିଁ ପ୍ରକୃତ ମନ

ସୁମନ:- ସଂକଳ୍ପ କରି ଇନ୍ଦ୍ରିୟମାନଙ୍କୁ ପ୍ରବର୍ତ୍ତାଇବାକୁ ସୁମନ କୁହାଯାଏ ।

କୁମନ:- କୁ-କଳ୍ପନା କରି ଇନ୍ଦ୍ରିୟମାନଙ୍କୁ ପ୍ରବର୍ତ୍ତାଇବାକୁ କୁମନ କୁହାଯାଏ ।

ବିମନ:- କୌଣସି ଲୋକ ବା ପଦାର୍ଥଠାରେ ଶାନ୍ତି ନ ହୋଇ ବିରସ ହୋଇଗଲେ ତାହା ବିମନ ଅଟେ ।

ଅମନ:- କୌଣସି ଜ୍ଞାତ ବିଷୟରେ ହେଉ ବା ଅଜ୍ଞାତ ବିଷୟରେ ହେଉ ସେଥିରେ ତନ୍ମୟତା ହେଲେ ତାହାକୁ ଅମନ ବୋଲି ଧରାଯାଏ ।

ପଞ୍ଚଭୂତରୁ ପାଞ୍ଚ ପାଞ୍ଚ ପ୍ରକୃତି ଘେନି ପଚିଶ ପ୍ରକୃତିରେ ଏ ଦୁର୍ଲଭ ଶରୀର ଗଠିତ । ପୃଥିବୀରୁ ମଜ୍ଜା, ଅସ୍ଥି, ମାଂସ, ନାଡ଼ୀ ଓ ଚର୍ମ, ଜଳରୁ ଶୁକ୍ର, ଶୋଣିତ, ଲାଳ, ସ୍ୱେଦ ଓ ମୂତ୍ର, ଅଗ୍ନିରୁ କ୍ଷୁଧା, ପିପାସା, ନିଦ୍ରା, ଆଳସ୍ୟ ଓ ଶାନ୍ତି, ପବନରୁ ଧାରଣା, ଚାଳନ, କ୍ଷେପଣ, ପ୍ରସାରଣ ଓ ସଂକୋଚନ, ଆକାଶରୁ ଭୟ, ଲଜ୍ଜା, କାମ, ମୋହ ଓ ଲୋଭ ।

ସୃ- ଅନ୍ ଶରଣ ଆଶ୍ରୟ ଓ ରକ୍ଷକ, ପରଂବ୍ରହ୍ମ ସମସ୍ତ ପ୍ରାଣୀଙ୍କର ସୃଷ୍ଟିକର୍ତ୍ତା ଓ ଆଶ୍ରୟଦାତା । ଏଣୁ ଧର୍ମ ଧାରଣେ ଧରିତ୍ରୀ ରହିଛି ଚାରିଯୁଗରେ । (ଭୀମଭୋଇ) ସତ୍ୟଯୁଗରେ ଧର୍ମ ଚାରିପାଦ, ତ୍ରେତୟାରେ ତିନିପାଦ, ଦ୍ୱାପରରେ ଦୁଇ ପାଦ ଓ କଳିରେ ଏକ ପାଦ । ସତ୍ୟଯୁଗରେ ନରଙ୍କର ଉଚ୍ଚତା ୧୪ ହାତ । ଏମାନେ ସ୍ୱର୍ଣ୍ଣପାତ୍ରରେ ଭୋଜନ କରୁଥିବା ସମୟରେ ଏମାନଙ୍କ ଆୟୁଷ ଥିଲା ୧୨୦ ବର୍ଷ, ତ୍ରେତୟାରେ ନରଙ୍କ ଉଚ୍ଚତା ୧୦୧/୨ ହାତ । ଏମାନେ ରୁପାପାତ୍ରରେ ଭୋଜନ କରୁଥିଲେ ଓ ଏମାନଙ୍କ ଆୟୁଷ ଥିଲା ୧୦୦ବର୍ଷ । ଦ୍ୱାପରରେ ନରଙ୍କ ଉଚ୍ଚତା ୭ ହାତ । ଏମାନେ ତମ୍ବାପାତ୍ରରେ ଭୋଜନ କରୁଥିବା ସମୟରେ ବୟସ ସୀମା ଥିଲା ୮୦ ବର୍ଷ । କଳିରେ ନରଙ୍କ ଉଚ୍ଚତା ୩ ୧/୨ ହାତ । ଏମାନଙ୍କ ଭୋଜନର ପାତ୍ର ଲୌହ ଓ ବୟସସୀମା ୬୦ ବର୍ଷରୁ କମ୍ ହେବ । ସ୍ୱର୍ଣ୍ଣଥାଳି, କଦଳୀ ପତ୍ର, ରୌପ୍ୟ ଥାଳି ପଦ୍ମପତ୍ର କିମ୍ବା ଖଲିପତ୍ରକୁ ଛାଡ଼ି କଳିର ଲୋକେ କାଗଜ ପାତ୍ରରେ ଭୋଜନ

କରିବେ । ଏହି ଚାରିଯୁଗରେ ମଣିଷର ପ୍ରାଣ ଅସ୍ଥି, ମଜ୍ଜାଗତ, ରକ୍ତ ଓ ଚର୍ମଗତ ଥିବା ସମୟରେ ଘୋର କଳିଯୁଗରେ ଅନ୍ନଗତ ପ୍ରାଣ ହେବ ।

"ଅନ୍ନଠାରୁ ପ୍ରାଣୀଗଣ ହୋଇଛନ୍ତି ଜାତ
ସେହି ପ୍ରାଣୀ ପ୍ରାଣ ଅନ୍ନପର୍ଜନ୍ୟ ସମ୍ଭୂତ ।
ଯଜ୍ଞରୁ ହୋଇଛି ପୁଣି ଉତ୍ପତ୍ତି ପର୍ଜନ୍ୟ
ମାତ୍ର କର୍ମ ଅଟେ ସେହି ଯଜ୍ଞର ନିଦାନ ।"

କଳିରେ ମନୁଷ୍ୟ ସଦ୍‌ବୁଦ୍ଧି ଓ ସଦ୍‌ଜ୍ଞାନ ହରାଇବା ସହ ଅଧର୍ମ ପନ୍ଥା ଅବଲମ୍ବନ କରିବେ । ଜୀବନର ସୁଖଶାନ୍ତି ପାଇବାକୁ ହେଲେ ସଦ୍‌ବୁଦ୍ଧିର ବିକାଶ ଜରୁରୀ ।

ପୁଣ୍ୟ ପ୍ରଜ୍ଞା ବର୍ଦ୍ଧୟତି କ୍ରିୟମାଣଂ ପୁନଃପୁନଃ
ବୃଦ୍ଧପ୍ରଜ୍ଞଃ ପୁଣ୍ୟମେବ ନିତ୍ୟାମାରଭତେ ନରଃ । (ଉଦ୍‌ଯୋଗ)

ବାରମ୍ବାର ପୁଣ୍ୟ କାର୍ଯ୍ୟ କରିଚାଲିଲେ ସଦ୍‌ବୁଦ୍ଧି ଉଦୟ ହୁଏ । ଏହାଦ୍ୱାରା ମନୁଷ୍ୟ ପୁଣ୍ୟମୟ ହୋଇଯାଏ । ସତ୍ୟ ଅହିଂସା ଓ ସତ୍‌ସଙ୍ଗ ଜୀବନର ମୂଳମନ୍ତ୍ର ହେଲେ ଜ୍ଞାନର ଆଲୋକ ଘଟିବାରେ ଦ୍ୱିଧା ନାହିଁ ।

ଦଇବ ଦଉଡ଼ି ମଣିଷ ଗାଈ
ଯେଣିକି ଟାଣଇ ତେଣିକି ଯାଇ ।

ଜୀବନ ଈଶ୍ୱରାଧୀନ । କର୍ମ ଅନୁସାରେ ଜୀବ ଶରୀର ଗ୍ରହଣ କରେ । ପରଂବ୍ରହ୍ମ ତାକୁ ଆଗେ ଶରୀରରେ ନିୟୋଜନ କରିବା ପରେ ଜୀବ ଆତ୍ମାସୂତ୍ରକୁ ଧରି ପ୍ରକୃତି ସହ ମିଶି ଶରୀର ଧାରଣ କରେ । ଫଳାଫଳ ପରଂବ୍ରହ୍ମଙ୍କ ଦତ୍ତ ଅଟେ ।

ନିଜ ଅର୍ଜିଲା କର୍ମଫଳ । ପ୍ରାଣୀ ତା' ଭୁଞ୍ଜଇ ସକଳ ॥
କର୍ମ କରିବ ନାନା ମତେ । ଫଳିବ କର୍ମର ଆୟତ୍ତେ ॥ (ଭାଗବତ)

କର୍ମ କରିଚାଲ, ଫଳ ଆଶା ରଖ ନାହିଁ । (ଗୀତା)

ଏ ଜୀବ କର୍ମ କରିଥାଇ । ଈଶ୍ୱର ତହିଁ ନିଯୋଗଇ ॥
ଏ ଜୀବ ସ୍ୱକର୍ମ ବସରେ । ପୁରୁଷ ରେତ ଆଶ୍ରା କରେ ॥
ପୁଣି ଏ ଦେହ ଧରିବାକୁ । ପ୍ରବେଶ ଜନନୀ ଗର୍ଭକୁ ॥
କରି କରାଏ ସର୍ବ ମୁହିଁ । ଅନ୍ତରେ ସାକ୍ଷୀ ରୂପେ ରହି ॥
ଜୀବର ଭଲମନ୍ଦ ବାଣୀ । ମରଣକାଳେ ତାହା ଜାଣି ॥ (ଭାଗବତ)

ଜୀବ ସ୍ଥାବର, ଜଙ୍ଗମ, କୀଟ, ପତଙ୍ଗ, ପଶୁ, ପକ୍ଷୀ ଇତ୍ୟାଦି ଚାରି ଖାନିରେ ଚଉରାଅଶି ଯୋନି ଭ୍ରମଣ କରି ଶ୍ରେଷ୍ଠ ମନୁଷ୍ୟ ଜନ୍ମଲାଭ କରେ । ସେ ତା'ର ସୁକର୍ମ

ହେତୁ ରାଜା, ଧନୀ, ଜ୍ଞାନୀ, ଗୁଣୀ, କବି, ସନ୍ଥ ଓ ସନ୍ନ୍ୟାସୀ ହେବା ସହ ସୁଖମୟ ଜୀବନଯାପନ କରେ । ଦୀର୍ଘାୟୁ ହୋଇ ସମ୍ମାନର ପଦବାଚ୍ୟ ହୋଇଥାଏ । କୁକର୍ମ ଦ୍ୱାରା ଚୋର, ରୋଗୀ, ଦୁଃଖୀ, କାଲ, ଛୋଟା, ଅନ୍ଧ, କୁଜା, ଜଡ଼ା, ଅଳ୍ପାୟୁ ହୋଇଥାଏ ।

ନିଜ ଅର୍ଜିତ କର୍ମେ ପଥ ଶ୍ରମି । ଅଶେଷ କୋଟି ଯୋନି ଭ୍ରମି ।
ସ୍ଥାବର ଆଦି ଚାରି ଦେହେ । ପଶୁ, ପତଙ୍ଗ, କୀଟ ହୁଏ ।
ଶ୍ୱାନ, ଶୃଗାଳ, ବାଜି, ଗଜେ । ଏ ରୂପେ ନାନା ଯୋନି ଭଜେ ।

ଏଣୁ ହେ ଜ୍ଞାନୀ ଗୁଣୀ ବିଦୁଷକ ମଣ୍ଡଳୀ, ପରଂବ୍ରହ୍ମ ଆତ୍ମାରାମ ଶ୍ରୀଜଗନ୍ନାଥଙ୍କଠାରେ ଲୟ ରଖି ସତ୍ୟର ପଥଗାମୀ ହୁଅ । ବିଶ୍ୱ ଯାହାଙ୍କଠାରୁ ଉତ୍ପତ୍ତି, ଯାହାଙ୍କ ଦ୍ୱାରା ଧାରଣ, ଲାଳନ ଓ ପାଳନ ହୋଇ, ପୁଣି ପ୍ରଳୟ କାଳରେ ବିଲୟ ହୋଇଯାଏ, ସେ ହିଁ ପରଂବ୍ରହ୍ମ ଶ୍ରୀଜଗନ୍ନାଥ, ପରଂବିଷ୍ଣୁ ଭଗବାନ ।

ଯସ୍ମିତ୍ ଭବନ୍ତି ଭୂତାନି ସ୍ଥିତି ଯତ୍ର ପ୍ରଲିୟତେ
ସ ଦେବସ୍ୟ ଜଗନ୍ନାଥ ବ୍ୟାପୀ ତଂ ସଚରାଚରଂ । (ପ୍ରାଣବ ବ୍ୟାହୁତି)

× × × ×

ବିଷ୍ଣୁର ମୁଖ ଭୁଜ ଉରୁ । ଅଭୟ ପାଦ ପଙ୍କଜରୁ ।
ବ୍ରାହ୍ମଣ ଆଦି ଚାରି ବର୍ଣ୍ଣେ । ଜନ୍ମିଲେ ସ୍ୱଭାବେ ତ୍ରିଗୁଣେ ।
ଏଣୁ ସେ ବିଷ୍ଣୁ ପିତାମାତା । ଗୁରୁ ବାନ୍ଧବ ଇଷ୍ଟଦାତା । (ଭାଗବତ)

ଭଗବାନ ନାମାମୃତ ପାନ କରିଚାଲ, ତାଙ୍କ ଚରଣରେ ଶରଣ ଯାଅ । ସତ୍ ପଥରେ ଥାଇ ନିଜକୁ ଗଢ଼ି ଚାଲ । ପ୍ରାଣୀର ସେବାକୁ ଜୀବନର ବ୍ରତ କରି ନିଅ । ନିଶ୍ଚୟ ଦିନେ ପ୍ରଭୁ କୃପାଲାଭ କରିବ ।

ସତ୍ୟ ଯୁଗେ ଦଶ ବର୍ଷେ ତପେ ଯେଉଁ ଫଳ
ତ୍ରେତା ଯୁଗେ ବରଷକେ ମିଳେ ତା' ସକଳ
ଦ୍ୱାପରେ ସେ ଫଳ ଏକ ମାସରେ ମିଳଇ
କଳିଯୁଗେ ଏକ ଅହୋରାତ୍ରେ ତାହା ପାଇ ।

ଏଣୁ ହଜାର ହଜାର ଲୋକଙ୍କ ମଧ୍ୟରେ ଜଣେ ତ୍ୟାଗୀ । ହଜାର ହଜାର ତ୍ୟାଗୀଙ୍କ ମଧ୍ୟରେ ଜଣେ ଆତ୍ମଜ୍ଞାନୀ । ହଜାର ହଜାର ଆତ୍ମଜ୍ଞାନୀଙ୍କ ମଧ୍ୟରେ ଜଣେ ମୁକ୍ତିଜୀବ, ହଜାର ହଜାର ମୁକ୍ତିଜୀବଙ୍କ ମଧ୍ୟରେ କେହି ଜଣେ ଭଗବାନଙ୍କ କରୁଣାରୁ ତାଙ୍କ ଶରୀରରେ ଲୀନ ହୋଇ ମୋକ୍ଷପ୍ରାପ୍ତ ପୂର୍ବକ ବୈକୁଣ୍ଠ ଧାମରେ ପ୍ରବେଶ କରନ୍ତି । (ବାୟାଗୀତା)

ଏ ଜୀବ ମରଣ ନିକଟ । ବେଗେ ଚିନ୍ତଇ ଅନ୍ୟଘଟ ।
ଏହାର କଲା କର୍ମମାନ । ତେଣୁ ହୁଅନ୍ତି ସାବଧାନ ।
କର୍ମର ବଶ ହୁଏ ଜନ୍ତୁ । ଜନ୍ମ ମରଣ କର୍ମ ହେତୁ । (ଭାଗବତ)

ଶୁଦ୍ର ଜନ୍ମ ହେଲେ ଉପନୟନ ସଂସ୍କାର କର୍ମ ପରେ ଦ୍ୱିଜ, ବେଦ ପଠନକାରୀ ବିପ୍ର, ବ୍ରହ୍ମକୁ ଚିହ୍ନିଲେ ବ୍ରାହ୍ମଣ । ଯୋ ବ୍ରହ୍ମବିତ୍ ସ ଏବ ବ୍ରାହ୍ମଣଃ ।
(ନିରାଲମ୍ବୋପନିଷତ୍)

ପରଂବ୍ରହ୍ମ ହିଁ ଭଗବାନ-

"ଜନ୍ମନା ଜାୟତେ ଶୂଦ୍ରଃ ସଂସ୍କାରତ୍ ଦ୍ୱିଜ ଉଚ୍ୟତେ
ବେଦ ପାଠେ ଭବେତ୍ ବିପ୍ରଃ ବ୍ରହ୍ମ ଜାନାନି ବ୍ରାହ୍ମଣ ।" (ପ୍ରଣବବ୍ୟାହୃତି ଗୀତା)

× × × ×

ଏଶ୍ୱର୍ଯ୍ୟ, ବୀର୍ଯ୍ୟ, ଶ୍ରୀ ସୌନ୍ଦର୍ଯ୍ୟ, ଯଶ, ଜ୍ଞାନ ଓ ବୈରାଗ୍ୟ ଏହି ଛଅପ୍ରକାର ଭୋଗୈଶ୍ୱର୍ଯ୍ୟ । ସିଦ୍ଧି ଐଶ୍ୱର୍ଯ୍ୟ- ଅଣିମା, ଲଘିମା, ବ୍ୟାପ୍ତି, ପ୍ରାକାମ୍ୟ, ମହିମା, ଈଶିତ୍ୱ, ବସିତ୍ୟ, କାମ ବସାଇତ । ଏହି ଐଶ୍ୱର୍ଯ୍ୟକୁ ଯେଉଁମାନେ ପ୍ରାପ୍ତ ହୋଇଛନ୍ତି ସେମାନଙ୍କୁ ଭଗବାନ କୁହାଯାଏ । ଏ ଜୀବନ କ୍ଷଣଭଙ୍ଗୁର, ସତ୍ୟର ଅନୁସନ୍ଧାନ କରିଚାଲ । ମିଛ, ମାୟା ମୋହରେ ପଡ଼ି ବାୟା ହୁଅ ନାହିଁ । ସଭିଏଁ ସ୍ୱାର୍ଥର ସାଥି । ଗାଈଠାରୁ ମଧୁର କ୍ଷୀର ପାଇବା ପର୍ଯ୍ୟନ୍ତ ସମସ୍ତେ ଦୁହିଁ ଚାଲିଥିବେ । ଗାଈ କ୍ଷୀର ଛାଡ଼ିଲେ ଯେପରି ଖଣ୍ଡିଆ ପଠାଣକୁ ବିକ୍ରୟ କରାଯାଏ ସେହିପରି ଧନ ଉପାର୍ଜନ କରିବାର କ୍ଷମତା ଯେ ପର୍ଯ୍ୟନ୍ତ ରହିଥିବ ସଭିଏଁ ଆପଣାର ଭାବି ସ୍ନେହ ପ୍ରୀତିରେ ବାନ୍ଧି ରଖିଥିବେ । ଧନ ଉପାର୍ଜନର କ୍ଷମତା ସରିଗଲେ (ଯାବତ୍ ବିତ୍ତୋପାର୍ଜନ ଶକ୍ତି ତାବିନ୍ନଜ ପରିବାରୋରକ୍ତ- ଶଙ୍କରାଚାର୍ଯ୍ୟ) ସେ ହୋଇଯାଏ ଅଲୋଡ଼ା ମଣିଷ ପରି ।

ଧନ ଉପାର୍ଜନ ଶକ୍ତି ଥାଏ ଯେତେ ଦିନ,
ତେବେ କ୍ଷଣ ଅନୁରକ୍ତ ଆତ୍ମା ପରିଜନ ।
ଜରାଜୀର୍ଣ୍ଣ ହେଲେ ପୁଣି ଏହି କଳେବର,
ପଚାରିବେ ନାହିଁ କେହି ଘରେ ସମାଚାର । (ମୋହୋମୁଦ୍‌ଗର)

ଯେତେ ଧନ ଅର୍ଜିଲେ ମଧ୍ୟ ସଂସାରରୁ କିଛି ନବାକୁ ହେବ ନାହିଁ । 'ଆସିଛୁ ଲଙ୍ଗଳା ଯିବୁ ଲଙ୍ଗଳା' ଏହା ଧ୍ରୁବ ସତ୍ୟ । ଏକା ଧର୍ମ ହିଁ ସଖା । ଅର୍ଜିଥିବା ଧନକୁ ପାଇବା ପାଇଁ ଚାଲି ରହିବ ଦ୍ୱନ୍ଦ୍ୱ । କ୍ଷଣକ ମଧ୍ୟରେ ଭୁଲିଯିବେ ତୋ' କଥା । ଭୟରେ କିଳାଉ ଥିବେ ସର୍ବାଙ୍ଗ । ସବୁ ମିଛ ଆଉ ମିଛ । ମାୟା ଓ ମରୀଚିକା ।

ଘରକୁ କରିଛୁ ବାର ଉଆଁସ

କେବଳ

ମରିଗଲେ ନେବୁ କତରା ହେଁସ ।

ଜଗତରେ ଧର୍ମ ହିଁ ଭଗବାନ । ଏଣୁ ଜୀବେ ଦୟା, ପ୍ରାଣୀ ସେବା ଜୀବନର ମୂଳମନ୍ତ୍ର ହେବା ବିଧେୟ । ହେ ଜ୍ଞାନୀ, ଗୁଣୀ, ବିଦୂଷକ ମଣ୍ଡଳୀ, ଥରେ ଦିବ୍ୟଜ୍ଞାନ ଚକ୍ଷୁରେ ଅବଲୋକନ କର । ମାୟାମୋହକୁ କାଟି, ସତ୍ୟ ଓ ଅସତ୍ୟ ମଧ୍ୟରେ ଥିବା ପ୍ରାଚୀରକୁ ଭାଙ୍ଗି ସତ୍ୟର ପଥରେ ଅନୁଧାବନ କରି ବ୍ରହ୍ମଚିନ୍ତନରେ ମଜ୍ଜି ଯାଅ । ଏ ବିଶ୍ୱ ବ୍ରହ୍ମାଣ୍ଡରେ ପରଂବ୍ରହ୍ମଙ୍କ ଚିନ୍ତନରୁ ନିବୃତ ରହୁଥିବା ବ୍ୟକ୍ତିବିଶେଷ ଯଥା:-

ବାଳକମାନେ ସର୍ବଦା କ୍ରୀଡ଼ାରେ ଆସକ୍ତ<br>
ଯୁବାମାନେ ଯୁବତୀଙ୍କ ପ୍ରଣୟେ ମୋହିତ<br>
ବିଷୟା ଚିନ୍ତାରେ ବୃଦ୍ଧ ଅଟେ ନିମଗନ<br>
ନକରନ୍ତି କେହି ପରଂବ୍ରହ୍ମଙ୍କ ଭଜନ । (ମୋହମୁଦ୍‌ଗର)

ବାସୁଦେବଙ୍କ ପାଖରେ ଦେଇଥିବା କଥାକୁ ଥରେ ସ୍ମରଣ କରି ନିଜେ ନିଜସ୍ୱ ଧର୍ମରେ ଚାଲ । ବିଷୟାରସ ଗରଳ ସଦୃଶ । ହେ ସୁଧୀଜନେ, ସତ୍ୟକୁ ଆଶ୍ରୟ କରି ଧର୍ମକୁ ପାଳନ କର ।

ବିଷୟା ରସରେ ମଜ୍ଜିଣ ସାଧୁସଂଗତ ତେଜି<br>
ତରୁଣୀ ତନୟା ତନୁକୁ ଦିବାରଜନୀ ହେଜି ।<br>
ତୁମ୍ଭ ନାମ କାହୁଁ ଜାଣିବି ପ୍ରଭୁ ଜଗତ୍‌ଜୀବନ<br>
ପ୍ରକୃତି ମୋତେଟି ଭୁଲାଏ ସୁଦ୍ଧା ରସ ଆପ୍ୟାନ ।<br>
ପତିତପାବନ ନାମଟି ଯେଣୁ ଶୁଣିଲି ତୋର<br>
ଦିନ ଅଚ୍ୟୁତ ଯେ ଭଣଇ ତୁମେ ଭରସା ମୋର । (ଅଷ୍ଟ ଗୁଜ୍ଜରୀ)

ଶଙ୍ଖକ୍ଷେତ୍ରେ ବିରାଜିତ ପ୍ରଭୁ ଶ୍ରୀନୀଳମାଧବଙ୍କ ପାଦପଦ୍ମରେ ଶରଣ ଯାଅ । ସେ ନିଶ୍ଚେ କୋଳେଇ ନେବେ । ଦୁଇବାହୁ ପ୍ରସାରୀ ସେ ପରା ନୀଳକନ୍ଦରରେ ବିରାଜିତ । ଜାତି, ଧର୍ମ, ବର୍ଣ୍ଣ, ଧନୀ ଓ ଗରିବ ନିର୍ବିଶେଷରେ ତାଙ୍କ ନିକଟରେ ସମସ୍ତେ ଆପଣାର । ଏଣୁ ଆନନ୍ଦେ ଗାଇଉଠ-

ଆନନ୍ଦେ ବୋଲ ହରି ହରି<br>
ହରି କରିବେ ଭବୁ ପାରି ।



# ଖ୍ରୀଷ୍ଟଧର୍ମ ଓ ଯୀଶୁ

ଭାରତ ବହୁ ଧର୍ମର ସଂଗମସ୍ଥଳୀ । ଏ ଦେଶର ଅଧିବାସୀମାନେ ହିନ୍ଦୁ, ବୌଦ୍ଧ, ଜୈନ ଓ ଖ୍ରୀଷ୍ଟଧର୍ମ, ଇସ୍‌ଲାମ ଧର୍ମ, ଶିଖ୍ ଧର୍ମ ଓ ମହିମା ଧର୍ମ ଅବଲମ୍ବନ କରୁଥିବାର ଦେଖାଯାଏ । ଏସବୁ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ବିଭିନ୍ନ ମତାବଲମ୍ବୀ ଲୋକ ମଧ୍ୟ ଭାରତ ବର୍ଷରେ ଦେଖାଯାଆନ୍ତି । ଭାରତ ଏକ ବିଶାଳ ଓ ମହାନ ସଂସ୍କୃତିର ଦେଶ । ଏହାର ସଂସ୍କୃତିରେ ବିଭିନ୍ନତା ମଧ୍ୟରେ ଏକତା ଦେଖାଯାଏ । ବିଭିନ୍ନ ଧର୍ମସଂସ୍ଥା ଦେଖାଯାଉଥିଲେ ମଧ୍ୟ ସମସ୍ତ ଧର୍ମର ଲକ୍ଷ୍ୟ ଏକ । ଯାହାକି ଭଗବାନଙ୍କୁ ପାଇବା ଓ ଗତିମୁକ୍ତି ପ୍ରଦାନ କାରି ଈଶ୍ୱର ସମସ୍ତ ପ୍ରାଣୀ କୁଳକୁ ନର୍କ ଯନ୍ତ୍ରଣାରୁ ମୁକ୍ତ ପ୍ରଦାନ କରି ବୈକୁଣ୍ଠପୁରରେ ସ୍ଥାନିତ କରିବା ପ୍ରତ୍ୟେକ ଧର୍ମର ମୂଳଲକ୍ଷ୍ୟ । ଏସବୁ ଧର୍ମ ମତବାଦ ମଧ୍ୟରୁ ଖ୍ରୀଷ୍ଟଧର୍ମ ଅନ୍ୟତମ ।

ଆଧୁନିକ ଯୁଗରେ ଖ୍ରୀଷ୍ଟଧର୍ମ ବହୁଳ ଭାବରେ ପ୍ରଚାର ଓ ପ୍ରସାର ଲାଭ କରିଅଛି । ଯୀଶୁ ଖ୍ରୀଷ୍ଟଙ୍କ ପ୍ରଚାରିତ ଧର୍ମନୀତି ଓ ମହାନ ଚିନ୍ତାଧାରା ଉପରେ ପର୍ଯ୍ୟବଶିତ ଧର୍ମକୁ ଖ୍ରୀଷ୍ଟଧର୍ମ ବୋଲି ଗ୍ରହଣ କରାଯାଏ । ଯୀଶୁଖ୍ରୀଷ୍ଟଙ୍କ ଜନ୍ମ ଜେରୁଯେଲମ୍ ନୀକଟବର୍ତ୍ତୀ ବାଥେଲ୍‌ହାମ୍ ସ୍ଥାନରେ ଯୀଶୁ ଏକ ଜ୍ୟୁବା ଇହୁଦୀ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଯୋଶେଫ୍ ଓ ମାତାଙ୍କ ନାମ ମେରୀ ଥିଲା । ମେରୀ ତାଙ୍କୁ ଏକ ପଶୁଶାଳାରେ ଜନ୍ମ କରାଇଥିଲେ ।

ବାଇବେଲ୍ ଖ୍ରୀଷ୍ଟଧର୍ମର ମହାନ ଧର୍ମଗ୍ରନ୍ଥ ଭାବରେ ଖ୍ୟାତ । ଯୀଶୁ ଜନ୍ମ ହେବାମାତ୍ରେ ତାଙ୍କଠାରେ ଈଶ୍ୱରୀୟ ଗୁଣର ପରିପ୍ରକାଶ ହେଉ ଅଛି ବୋଲି ଚତୁର୍ଦ୍ଦିଗକୁ ବ୍ୟାପୀଥିଲା । ଏହାଦ୍ୱାରା ଇହୁଦୀ ଧର୍ମନେତା ଓ ରାଜାମାନେ ତାଙ୍କର ଶତ୍ରୁ ହୋଇଉଠିଲେ । ଏହାର ମୂଳ କାରଣ ଇହୁଦୀ ଓ ରାଜାମାନଙ୍କର କ୍ଷମତା ହ୍ରାସ ପାଇବାକୁ ଲାଗିଲା ।

ଯୀଶୁ ନିଜକୁ ଈଶ୍ୱରଙ୍କ ପୁତ୍ର ଭାବରେ ଭାବୁଥିଲେ । ମାତ୍ର ୧୨ବର୍ଷ ବୟସରେ ସେ ଆଧାତ୍ମିକ ବିଷୟରେ ଚର୍ଚ୍ଚା କରି ସମସ୍ତ ପଣ୍ଡିତମାନଙ୍କୁ ପରାଜୟ କରିବା ସଙ୍ଗେସଙ୍ଗେ ଏକ ନୂତନ ଧର୍ମର ବାଟ ଦେଖାଇବାକୁ ସକ୍ଷମ ହୋଇ

ପାରିଥିଲେ । ସେ ଦୀର୍ଘ ୧୮ ବର୍ଷ କାଳ ନାଜାରେଥଠାରେ ବସବାସ କରି ସତ୍ ଉପଦେଶମାନ ଶିକ୍ଷା ଦେଉଥିଲେ । ୩୦ ବର୍ଷ ବୟସରେ ଜନ୍ ନାମକ ଜଣେ ଧର୍ମ ପ୍ରାଚରକଙ୍କଠାରୁ ଦୀକ୍ଷାଗ୍ରହଣ କରି ସେ ଗ୍ୟାଲିଲ୍ ନାମକ ସ୍ଥାନରେ ନିଜର ମତପ୍ରକାଶ କଲେ । ତାଙ୍କର ମତବାଦକୁ ଅନେକ ଗ୍ରହଣ କଲେ । ସେହି ମତବାଦଗୁଡ଼ିକ ଅତ୍ୟନ୍ତ ସରଳ ଓ ନିଷ୍ପାପ ଥିଲା ।

ଇହୁଦୀମାନଙ୍କୁ ଯୀଶୁ ସତ୍‌ମାର୍ଗ ଦେଖାଉଥିବାରୁ ଜେରୁଜେଲମ୍ ସାରା ପ୍ରଚାରିତ ହୋଇଯିବା ଫଳରେ ଇହୁଦୀ ଧର୍ମ ନେତାମାନେ ଯୀଶୁଙ୍କଠାରେ ଖଳ ପ୍ରବୃତ୍ତି ଲଗାଇବାକୁ ଜାଗ୍ରତ ହୋଇ ପଡ଼ିଲେ । ସେହି ସମୟରେ ଯୁଦା ଅଞ୍ଚଳର ଶାସନକର୍ତ୍ତା ହେରୋଡ୍ ଥିଲେ । ସେ ହୃଦୟଙ୍ଗମ କଲେ ଯୀଶୁ ରାଜା ହେବା ପାଇଁ ତାଙ୍କ ସହ ପ୍ରତିଦ୍ୱନ୍ଦ୍ୱିତା କରିପାରନ୍ତି । ଏଣୁ ଯୀଶୁଙ୍କୁ ଜୀବନରୁ ମାରିଦେବା ପାଇଁ ସେ ଖୋଜି ବୁଲିଲେ । ଯୀଶୁଙ୍କ ପିତା ମାତା ଏହା ଜାଣିପାରି ଅନ୍ୟତ୍ର ଚାଲିଗଲେ । ଯୀଶୁଙ୍କୁ ନପାଇ ହେରୋଡ୍ ବାଥେଲହାମ୍‌ଠାରେ ଜନ୍ମିଥିବା ସମସ୍ତ ଶିଶୁ ପୁତ୍ରଙ୍କୁ ହତ୍ୟା କଲେ । ଏମାନଙ୍କ ମଧ୍ୟରେ ଯୀଶୁ ମରିଯାଇଛନ୍ତି ବୋଲି ଖୁସିରେ ହେରୋଡ୍ ନିଃଶ୍ୱାସ ମାରିଲେ ।

ଯୀଶୁଙ୍କର କରସ୍ପର୍ଶରେ ଅନେକ ରୋଗାକ୍ରାନ୍ତ ଲୋକ ଆରୋଗ୍ୟଲାଭ କରିପାରୁଥିଲେ । ତାଙ୍କ ଦ୍ୱାରା ପ୍ରଚାରିତ ଧର୍ମବାଣୀକୁ ଲୋକମାନେ ଗ୍ରହଣ କରିନେଉଥିଲେ । ମୂର୍ଖ ଓ ଅଜ୍ଞ ଲୋକମାନେ ତାଙ୍କ ଧର୍ମକୁ ବୁଝିପାରିଲେ ନାହିଁ । ତା'ଛଡ଼ା ଧର୍ମାନ୍ଧ ପୁରୋହିତମାନେ ଯୀଶୁଙ୍କ ବାଣୀର ଅନ୍ତର୍ନିହିତ ଅର୍ଥ ଓ ଗୁଣକୁ ନ ବୁଝି ଯୀଶୁଙ୍କୁ ଦେଶ ଓ ଧର୍ମର ବିରୋଧି ଲୋକ ଭାବି ଘୃଣା କରିବାକୁ ଲାଗିଲେ । ଯୀଶୁଙ୍କର ଘନିଷ୍ଠ ବଂଧୁ ଜନ୍‌ପିଟର ଏବଂ ଜେମ୍ସଙ୍କୁ ସାଙ୍ଗରେ ଧରି ପାଲେଷ୍ଟାଇନ୍ ରାଜ୍ୟରେ ବୁଲିବୁଲି ତାଙ୍କର ଧର୍ମବାଣୀକୁ ପ୍ରଚାର କଲେ । ପିଟର ଯୀଶୁଙ୍କ ବାଣୀକୁ ଚିରନ୍ତନ ସତ୍ୟ ଓ ଜୀବନର ବାଣୀ ବୋଲି ଘୋଷଣା କଲେ । ଯୀଶୁଙ୍କ ପବିତ୍ର ବାଣୀ ସମସ୍ତଙ୍କ ହୃଦୟକୁ ସ୍ପର୍ଶ କଲା ସତ ହେଲେ ରାଜା ଓ ଅନ୍ଧବିଶ୍ୱାସୀ ଧର୍ମଯାଜକମାନେ ଏହାକୁ ଗ୍ରହଣ କଲେ ନାହିଁ । ସେମାନେ ଯୀଶୁଙ୍କ ବିରୁଦ୍ଧରେ ଜନମତ ସଂଗ୍ରହ କରି ନିଜର ଅଧିପତ୍ୟ ପ୍ରତିଷ୍ଠା କରିବାକୁ ଯାଇ ଯୀଶୁଙ୍କ ଉପରକୁ ଆକ୍ରମଣାତ୍ମକ ସଂଗ୍ରାମର ରଣତୂରୀ ବଜାଇବାକୁ ଲାଗିପଡ଼ିଲେ ।

ଯୀଶୁ ଶିକ୍ଷା ଦେଉଥିଲେ ଧନ ଓ କ୍ଷମତା ଦ୍ୱାରା ଈଶ୍ୱର ପ୍ରାପ୍ତି ଅସମ୍ଭବ । ସମଗ୍ର ମାନବଜାତି ଅସୀମ କରୁଣାମୟ ପରମପିତା ପରମେଶ୍ୱରଙ୍କ ସନ୍ତାନ । ପୁରୁଷ ଜାତିକୁ ଭାଇ ଓ ନାରୀ ଜାତିକୁ ମାତାରୂପେ ଗ୍ରହଣ କରିବା ମଧ୍ୟରେ ହିଂସା, ଦ୍ୱେଷ ଭାବ ଦୂର କରି ଭାତୃତ୍ୱ ଓ ପ୍ରେମ ବଂଧନରେ ଆବଦ୍ଧ ହେବାପାଇଁ ଯୀଶୁ ଉପଦେଶ

ଦେଉଥିଲେ । ସମସ୍ତଙ୍କୁ ସୁ-ସମ୍ମାନ ଓ ଯଥାମାନ୍ୟ ପ୍ରଦର୍ଶନ କରିବା ଉଚିତ୍ । ଏହା ଦ୍ୱାରା ନିଜେ ମଧ୍ୟ ସମ୍ମାନର ଅଧିକାରୀ ହୋଇପାରିବ । ପ୍ରକୃତ ଈଶ୍ୱର, ପବିତ୍ର ପ୍ରେମେ ବିରାଜିତ । ମନୁଷ୍ୟ ପ୍ରତି ମନୁଷ୍ୟର ସୁ-ସଂପର୍କ ରହିବା ଉଚିତ୍ । ପ୍ରାଣୀକୁ ଭଲପାଇଲେ ଈଶ୍ୱର ତୁମ୍ଭମାନଙ୍କୁ ନିଶ୍ଚୟ ଭଲପାଇବେ । ଏକମାତ୍ର ପିତା କରୁଣାମୟ ଈଶ୍ୱର ସ୍ୱର୍ଗରେ ଅବସ୍ଥିତ । ସମସ୍ତ ମାନବ ଜାତି ସ୍ୱର୍ଗସ୍ଥ ସେହି ପିତାଙ୍କ ସନ୍ତାନ । ସେହି ପିତାଙ୍କୁ ଓ ନିଜର ପ୍ରତିବେଶୀଙ୍କୁ ତୁମେ ଆପଣାର ଭାବେ ପ୍ରେମ କର । କାହାରିକୁ ଘୃଣାଚକ୍ଷୁରେ ନଦେଖି ସ୍ନେହପୂର୍ଣ୍ଣ ଚକ୍ଷୁରେ ଦେଖିବା ଉଚିତ୍ । ଏପରିକି ନିଜର ଶତ୍ରୁକୁ ମଧ୍ୟ ଘୃଣା ନ କରି ପବତ୍ର ଚକ୍ଷୁରେ ଦେଖିବା ପାଇଁ ଯୀଶୁ ଉପଦେଶ ଦେଉଥିଲେ । ତୁମ୍ଭର ପାଦରେ ଯିଏ କଣ୍ଟାର ଆଘାତ ଦେଉଅଛି ତୁମ୍ଭେ ତା'ର ପାଦରେ ପୁଷ୍ପର ଗାଲିଚା ବିଛାଇବାକୁ ଚେଷ୍ଟା କର ।

ଇହୁଦୀମାନଙ୍କ ନୀତି ଥିଲା ପ୍ରତିବେଶୀଙ୍କୁ ଭଲପାଅ ଓ ଶତ୍ରୁଙ୍କୁ ଘୃଣାକର, ଏଣୁ ଯୀଶୁଙ୍କ ମତକୁ ଏମାନେ ଗ୍ରହଣ କଲେ ନାହିଁ । ଧନୀ ବ୍ୟକ୍ତିମାନଙ୍କୁ ଉପଦେଶ ଦେଇ ଯୀଶୁ କହୁଥିଲେ, ନିଜର ଆବଶ୍ୟକ ଧନ ରଖି ଅନ୍ୟ ସମସ୍ତ ଧନକୁ ଦରିଦ୍ରମାନଙ୍କୁ ବାଣ୍ଟିଦେବା ଉଚିତ୍ । ପ୍ରାଣୀ ସେବା ହିଁ ମାଧବର ସେବା । କିନ୍ତୁ ଇହୁଦୀମାନେ ଏ ନୀତିକୁ ଗ୍ରହଣ କରୁନଥିଲେ ।

ଯୀଶୁ ପ୍ରତି ମନୁଷ୍ୟ ଦେହରେ ୯ଟି ମହତ୍ ଗୁଣ ରଖିବା ପାଇଁ ଉପଦେଶ ଦେଉଥିଲେ । ଯେଉଁମାନେ ନମ୍ର, ଧୀର, ଦୟାଳୁ, ପବିତ୍ର, ଶୋକାତୁର, ନ୍ୟାୟୀ, ଶାନ୍ତିକାମୀ, ଈଶ୍ୱର ଭକ୍ତ ଓ ସଦ୍‌ବିଶ୍ୱାସ ପାଇଁ ନିର୍ଯାତିତ ହେଲେ ମଧ୍ୟ ସେମାନେ ହିଁ ଧନ୍ୟ । ପାପ ପାଇଁ ଅନୁତାପ କର । ପାପକୁ ଘୃଣାକର । କିନ୍ତୁ ପାପୀକୁ ନୁହେଁ, ଶତ୍ରୁକୁ ପ୍ରେମ କର । ଯେ ଅଭିଶାପ ଦେଉଅଛି, ତାକୁ ଆଶୀର୍ବାଦ କର, ଯେ ତୁମକୁ ଘୃଣା କରେ ତା'ର ପ୍ରଶଂସା କର । ଯେ ତୁମକୁ କଷ୍ଟ ଦେଉଅଛି ତୁମେ ତା'ର ମଙ୍ଗଳ ପାଇଁ ଈଶ୍ୱରଙ୍କୁ ପ୍ରାର୍ଥନା କର । ଏହାଦ୍ୱାରା ତୁମେ ଭଗବାନଙ୍କ ନିକଟତର ହୋଇ ପାରିବ ଓ ଭଗବାନଙ୍କ ରାଜ୍ୟରେ ବାସ କରି ପାରିବ ।

ଇହୁଦୀମାନେ ଯୀଶୁଙ୍କ ନୀତିରେ ସନ୍ତୁଷ୍ଟ ନଥିଲେ । ସେମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ରୋମ୍‌ର ଶାସକ ଯୀଶୁଙ୍କୁ କ୍ରୁଶବିଦ୍ଧ କରି ହତ୍ୟା କରିଥିଲେ । ଯୀଶୁ ଧର୍ମ ଉତ୍ସବମାନଙ୍କରେ ଯୋଗଦେବା ପାଇଁ ଜେରୁଜେଲମ୍ ଆସୁଥିଲେ । ଯୁଦାଇସ୍‌କାରିଟ୍ ନାମକ ତାଙ୍କର ଜଣେ ଶିଷ୍ୟ ବିଶ୍ୱାସଘାତକତା କରି ଯୀଶୁଙ୍କୁ ବିଦ୍ରୋହୀ ଇହୁଦୀମାନଙ୍କ ହାତରେ ଧରାଇ ଦେଇଥିଲେ । ଧର୍ମନେତାମାନେ ରାତିକ ଭିତରେ ଯୀଶୁଙ୍କୁ ଦୋଷୀ ସାବ୍ୟସ୍ତ କରି ମୃତ୍ୟୁ ଦଣ୍ଡାଦେଶ ପ୍ରଦାନ କରିଥିଲେ । ସକାଳୁ ସକାଳୁ ଯୀଶୁଙ୍କୁ ନେଇ

ରୋମ୍‌ର ଶାସନକର୍ତ୍ତା ପଣ୍ଟିଆସ୍ ପିଲେଟଙ୍କ ପାଖରେ ହାଜର କରି ଯୀଶୁଙ୍କୁ କ୍ରୁଶବିଦ୍ଧ କରିବାକୁ ଦାବି କଲେ ।

ଜେରୁଜେଲମ୍‌ର ବାହାରେ କାଲ୍‌ଭାରୀ ନାମକ ଏକ ପାହାଡ଼ ଉପରେ ୩୩ ବର୍ଷ ବୟସରେ ଯୀଶୁଙ୍କୁ କ୍ରୁଶବିଦ୍ଧ କରାଯାଇଥିଲା । କ୍ରୁଶବିଦ୍ଧ ହେବା ସମୟରେ ମଧ୍ୟ ଯୀଶୁ ତାଙ୍କ ହତ୍ୟାକାରୀମାନଙ୍କ ଉଦ୍ଦେଶ୍ୟରେ ପ୍ରକାଶ କରିଥିଲେ- "ହେ ପରମପିତା ! ଯେଉଁମାନେ ମୋତେ କ୍ରୁଶବିଦ୍ଧ କଲେ ତୁମେ ସେମାନଙ୍କୁ କ୍ଷମା କର । କାରଣ ସେମାନେ କ'ଣ କରୁଛନ୍ତି ତାହା ସେମାନଙ୍କୁ ଅଗୋଚର ।" ଯୀଶୁଖ୍ରୀଷ୍ଟଙ୍କ ମୃତ୍ୟୁପରେ ଧନୀ ଇହୁଦୀସଲ୍ ଏହି ଧର୍ମକୁ ଗ୍ରହଣ କରିଥିଲେ । ଏହିଧର୍ମ ଗ୍ରହଣ କରିବା ପରେ ସେ ସେଣ୍ଟପଲ୍ ଭାବରେ ପରିଚିତ ହେଲେ । ସେ ଖ୍ରୀଷ୍ଟଧର୍ମର ମୁଖ୍ୟ ସାଂଗଠନିକ ପ୍ରତିଷ୍ଠାତା ଥିଲେ । ରୋମ୍‌ର ଶାସକମାନେ ଖ୍ରୀଷ୍ଟିଆନ୍‌ମାନଙ୍କୁ ବହୁତ ନିର୍ଯାତନା ଦେଉଥିଲେ । ଏହାର ମୂଳକାରଣ ହେଲା ରୋମ୍‌ର ଶାସକ ସିଜର୍‌ଙ୍କୁ ଈଶ୍ୱର ଭାବେ ଗ୍ରହଣ କରୁନଥିଲେ । ପରବର୍ତ୍ତୀ ରୋମ୍ ସମ୍ରାଟ କାନ୍‌ଷ୍ଟାଣ୍ଟାଇନ୍ ଖ୍ରୀଷ୍ଟଧର୍ମରେ ଆକୃଷ୍ଟ ହୋଇଥିଲେ । ୩୩୭ ଖ୍ରୀଷ୍ଟାବ୍ଦରେ ସେ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ହେଲେ । ସେହିଦିନଠାରୁ ଖ୍ରୀଷ୍ଟଧର୍ମ ରୋମ୍ ସାମ୍ରାଜ୍ୟରେ ରାଷ୍ଟ୍ରୀୟ ଧର୍ମର ସମ୍ମାନଲାଭ କରିବା ସଂଗେସଂଗେ ନିଜର ଆଧିପତ୍ୟ ବିସ୍ତାର କରିବାକୁ ଲାଗିଲା ।

ଷୋଡ଼ଶ ଶତାବ୍ଦରେ ଖ୍ରୀଷ୍ଟଧର୍ମ ଦୁଇ ଭାଗରେ ବିଭକ୍ତ ହୋଇଥିଲା । ପ୍ରଥମତଃ କ୍ୟାଥଲିକ୍ ଓ ପ୍ରୋଟେଷ୍ଟାଣ୍ଟ । ଖ୍ରୀଷ୍ଟ ଜଗତର ଧର୍ମଗୁରୁ ପୋପ୍‌ଙ୍କର ଅନୁଗାମୀମାନେ କ୍ୟାଥଲିକ୍ ଓ ମାର୍ଟିନ୍‌ଲୁଥରଙ୍କର ସମର୍ଥକମାନେ ପ୍ରୋଟେଷ୍ଟାଣ୍ଟ ନାମରେ ପରିଚିତ ହେଲେ । ଇଟାଲୀ, ପଶ୍ଚିମ ଜର୍ମାନୀ ଓ ଫ୍ରାନ୍‌ସ ଆଧିବାସୀମାନେ କ୍ୟାଥଲିକ୍ ସଂପ୍ରଦାୟ ଓ ଉତ୍ତର ଜର୍ମାନୀ, ଇଂଲଣ୍ଡ ଓ ହଲାଣ୍ଡ ଆଧିବାସୀମାନେ ପ୍ରୋଟେଷ୍ଟାଣ୍ଟ ସଂପ୍ରଦାୟ ଭାବରେ ଖ୍ୟାତ ।

ସମଗ୍ର ମାନବ ସଭ୍ୟତା ଉପରେ ଖ୍ରୀଷ୍ଟଧର୍ମର ପ୍ରଭାବ ପରିଲକ୍ଷିତ ହୋଇଥାଏ । ପ୍ରତ୍ୟେକ ଭାରତୀୟ ଭାଷାର ଅଭ୍ୟୁଦୟ ମୂଳରେ ଖ୍ରୀଷ୍ଟାନ୍ ମିସ୍‌ନାରୀମାନଙ୍କ ଅବଦାନ ଗ୍ରହଣଯୋଗ୍ୟ ।

ପ୍ରଥମ ଛାପାଖାନା ଓ ପ୍ରଥମ ସମ୍ବାଦ ପତ୍ର ମିସ୍‌ନାରୀମାନଙ୍କ ପ୍ରଚେଷ୍ଟାରେ ପତିଷ୍ଠିତ ହୋଇଥିଲା । ପୂର୍ବ ଭାରତୀୟ ବଣିକ ଗୋଷ୍ଠୀର ସଭାବତି ଗ୍ଲସଗ୍ରାଣ୍ଟ ଭାରତୀୟମାନଙ୍କୁ ପାଶ୍ଚାତ୍ୟ ଦେଶମାନଙ୍କର ଆଲୋକରେ ଆଲୋକିତ କରିବା ପାଇଁ ୧୭୯୩ ଖ୍ରୀଷ୍ଟାବ୍ଦରେ ମିସ୍‌ନାରୀ ସନନ୍ଦ ନବୀକରଣ ହେବା ସମୟରେ ଭାରତୀୟମାନଙ୍କୁ ନୂତନ ଜ୍ଞାନ ପ୍ରଦାନ କରିବା ପାଇଁ ଭାରତରେ ଖ୍ରୀଷ୍ଟଧର୍ମ ପ୍ରଚାର

କରିବାକୁ ପ୍ରସ୍ତାବ ଦେଇଥିଲେ । ମାତ୍ର ଚାର୍ଲସ ଗ୍ରାଣ୍ଟଙ୍କ ପରି ଇଲବର ଫୋର୍ସ, ରେଭେରେଣ୍ଡ ହଲ ପ୍ରଭୃତି ମାନବ କଲ୍ୟାଣକାମୀ ବ୍ୟକ୍ତି ଏହି ପ୍ରସ୍ତାବ ସଂପର୍କରେ ଜନମତ ସୃଷ୍ଟି କରି ୧୮୩୧ ଖ୍ରୀଷ୍ଟାବ୍ଦରେ ପାର୍ଲ୍ୟାମେଣ୍ଟରେ କମ୍ପାନୀର ସନନ୍ଦ ନବୀକରଣ ସମୟରେ ଭାରତକୁ ଖ୍ରୀଷ୍ଟିଆନ ମିସ୍‌ନାରୀ ବା ଧର୍ମପ୍ରଚାରମାନଙ୍କୁ ପଠାଇବା ପାଇଁ ପ୍ରସ୍ତାବ ଗୃହୀତ ହେଲା ।

ପ୍ରଥମେ ଭାରତକୁ ଖ୍ରୀଷ୍ଟ ଧର୍ମ ପ୍ରଚାର କରିବା ପାଇଁ ଡକ୍ଟର ଜନ୍ ଟମାସ୍ ଓ ଉଇଲିୟମ୍ କେରୀ ୧୭୯୩ ଖ୍ରୀଷ୍ଟାବ୍ଦରେ ଭାରତକୁ ଆସିଥିଲା । ୧୭୯୯ରେ ମାର୍ଶମାନ ଓ ଓ୍ୱାଡ୍ ତାଙ୍କ ସହଯୋଗ ଦେଲେ । ସେମାନେ ୧୮୦୦ ଖ୍ରୀଷ୍ଟାବ୍ଦ ଜାନୁଆରୀ ୧୦ ତାରିଖରେ କଲିକତା ନିକଟବର୍ତ୍ତୀ ଦିନାମାର୍ ଅଧିକୃତ ଅଞ୍ଚଳରେ ଶ୍ରୀରାମପୁରଠାରେ ପ୍ରିଣ୍ଟିଂ ମିସନ୍ ସ୍ଥାପିତ କରିଥିଲେ । ଏହାର ପ୍ରାଣପ୍ରତିଷ୍ଠାତା ଥିଲେ ଉଇଲିୟମ୍ କେରୀ । ଧର୍ମ ପ୍ରଚାର କରିବା ନିମନ୍ତେ ଖ୍ରୀଷ୍ଟଧର୍ମ ସଂପର୍କୀୟ ରଚନାବଳୀକୁ ଭାରତୀୟ ଭାଷାରେ ପ୍ରକାଶ କରିବା ପାଇଁ ଏକ ଛାପାଖାନା ବସାଇଲେ । ମୁଦ୍ରା ଯନ୍ତ୍ର କ୍ରୟ କରିବା ପାଇଁ କେରୀଙ୍କ ତତ୍ତ୍ୱାବଧାନରେ ବଙ୍ଗଳାର ପଞ୍ଚାନନ କର୍ମକାର ଓ ମନୋହର ଅକ୍ଷର ମାନ ଖୋଦନ କରିବାକୁ ସମର୍ଥ ହୋଇଥିଲେ ।

ଖ୍ରୀଷ୍ଟଧର୍ମ ପ୍ରଚାର କରିବା ପାଇଁ ବଙ୍ଗଳାର ପଡ଼ୋଶୀ ରାଜ୍ୟ ଓଡ଼ିଶା ଉପରେ ସେମାନଙ୍କର ଦୂରଦୃଷ୍ଟି ପଡ଼ିଥିଲା । ଇଂରେଜମାନେ ୧୮୦୩ ଖ୍ରୀଷ୍ଟାବ୍ଦରେ ମରାହଟ୍ଟାମାନଙ୍କଠାରୁ ଓଡ଼ିଶା ଅଧିକାର କରିଥିଲେ । ମିସ୍‌ନାରୀମାନେ ଶ୍ରୀରାମପୁରଠାରେ ଓଡ଼ିଆରେ ନୂତନ ନିୟମ ଓ ଖ୍ରୀଷ୍ଟଧର୍ମ ସଂପର୍କୀୟ ଅଳ୍ପ କେତୋଟି ଟ୍ରାକ୍ଟ ବା କ୍ଷୁଦ୍ର ପୁସ୍ତିକା ରଚନା କରିଥିଲେ । ୧୮୨୨ ଖ୍ରୀଷ୍ଟାବ୍ଦ ଫେବୃଆରୀ ୧୨ ତାରିଖ ଦିନ ବାମ୍ପଟନ୍ ଓ ପେଗସ୍ ସାହେବ ଦ୍ୱୟ ଧର୍ମପ୍ରଚାର କରିବା ପାଇଁ କଟକରେ ଆସି ପହଞ୍ଚିଲେ । ଏହାଙ୍କ ପରେପରେ ୧୮୨୩ ଖ୍ରୀଷ୍ଟାବ୍ଦରେ ଲେସି ସାହେବ, ୧୮୨୫ରେ ଡକ୍ଟର ସଟନ୍, ୧୮୩୦ରେ ଉଇଲିୟମ୍ ବ୍ରାଉନ୍, ୧୮୩୩ରେ ଜେଗୋଦ୍‌ବୀ, ୧୮୩୫ରେ ଜେବ୍ରୁକସ୍, ୧୮୩୭ରେ ଷ୍ଟାକିନ୍‌ସ, ୧୮୩୯ରେ ଉଇଲିୟମ୍ କିନ୍‌ସନ୍, ୧୮୪୧ରେ ଜେଗ୍ରାଣ୍ଟ ପ୍ରଭୃତି ମିସ୍‌ନାରୀମାନଙ୍କ ଓଡ଼ିଶା ଆଗମନ ଫଳରେ ଖ୍ରୀଷ୍ଟଧର୍ମର ପ୍ରଚାର ଓ ପ୍ରସାର ବହୁଳ ଭାବରେ ସଂପ୍ରସାରିତ ହୋଇପାରିଥିଲା । ୧୮୧୪ରେ ଖ୍ରୀଷ୍ଟିଆନ ପ୍ରଚାରକ କୃଷ୍ଣ ପାଲ (ପରିବର୍ତ୍ତିତ ନାମ ଜନ୍‌ପଟ୍‌ରସ୍) ବାଲେଶ୍ୱରରେ ଖ୍ରୀଷ୍ଟଧର୍ମ ପ୍ରଚାର କାର୍ଯ୍ୟ ଚଳାଇ ଥିଲେ ॥



# କୃପାମୟ ଶ୍ରୀଚନ୍ଦନେଶ୍ୱର

ଶାନ୍ତାକାରଂ ଶିଖରୀ ଶୟନଂ ନୀଳକଣ୍ଠଂ ସୁରେଶଂ
ବିଶ୍ୱାଧାରଂ ସ୍ଫଟିକ ସଦୃଶଂ ଶୁଭ୍ରବର୍ଣ୍ଣ ଶୁଭାଙ୍ଗମ୍ ।
ଗୌରୀ କାନ୍ତଂ ତ୍ରିତ୍ରୟନୟନଂ ଯୋଗିଭିର୍ଧ୍ୟାନଗମ୍ୟଂ
ବନ୍ଦେ ଶମ୍ଭୁଂ ଭବଭୟ ହରଂ ସର୍ବ ଲୌକୈକ ନାଥମ୍ ।

ଶିବ-ଶ + ଇ + ବ, ଯିଏ ସର୍ବଜ୍ଞ, ସର୍ବବିଶାରଦ, ସତ୍ୟ ସନାତନ, ସତ୍ୟ ଚିରନ୍ତନ ଓ ଶାଶ୍ୱତ ଜୀବ ଭିତରେ ଥିବା ଚେତନା ଶକ୍ତି ହିଁ ଶିବ । ପ୍ରାଣୀର ଗତି ମୁକ୍ତି, ଚତୁର୍ବର୍ଗ ଫଳପ୍ରାପ୍ତିର କଲ୍ୟାଣକାରୀ ସୁଗୁଣଗୁଡ଼ିକର ବିକଶିତ ଧାରା ହିଁ ଶିବ । ଜୀବନକୁ ଯେ ସୁଖ, ଶାନ୍ତି, ସମୃଦ୍ଧିରେ ଉର୍ଦ୍ଧ୍ୱକୁ ନେଇ ମୋକ୍ଷ କରିବା ସଙ୍ଗେସଙ୍ଗେ ସର୍ବ ପାପପଙ୍କରୁ ମୁକ୍ତି କରନ୍ତି ସେ ହିଁ ଶିବ । ଶବ ମଧ୍ୟରେ ଯେ ଶକ୍ତି ପ୍ରଦାନକାରୀ ଯାହାଙ୍କର ଆଦି ଅନ୍ତ ପାଇବା କଷ୍ଟକର । ଜନ୍ମ ମୃତ୍ୟୁର କରାଳ ଛାଇ ଯାହାକୁ ସ୍ପର୍ଶ କରି ପାରେ ନାହିଁ ସେ ହିଁ ଶିବ ଭାବେ ଖ୍ୟାତ ଓ ବିଶ୍ୱପୂଜିତ । ଯାହାରଙ୍କ ଜାତି, ଗୋତ୍ର, ପିତା, ମାତା, ଖୋଜି ପାଇବା ଅସମ୍ଭବ, ସେ ତ ଶୂନ୍ୟ ପୁରୁଷ ପରଂବ୍ରହ୍ମ ପରମାତ୍ମା, ସ-ଚରାଚରର ସୃଷ୍ଟିକର୍ତ୍ତା, ପାଳନକର୍ତ୍ତା ଓ ପ୍ରଳୟକର୍ତ୍ତା ଭାବରେ ବିଶ୍ୱଦରବାରରେ ମାନବର ପ୍ରତି ହୃଦୟରେ ପୂଜିତ । ତାଙ୍କର ଗୁଣ ଅସୀମ । ତାଙ୍କୁ ଖୋଜି ପାଇବା ଆମ୍ଭମାନଙ୍କ ପାଖରେ ଅସମ୍ଭବ । ସେ ତ ଆଦ୍ୟାଶକ୍ତି, ଜଗଦମ୍ବା ଆଦିମାତା ରୂପରେ ମଧ୍ୟ ଖ୍ୟାତ । ତାଙ୍କର ନାମ ଅନେକ । ଗୁଣରୁ ଗୁଣାତୀତ । ଜୀବକୁ ଯେ ପାଳନ କରନ୍ତି ସେ ହିଁ ଶିବ ପଶୁପତି ବା ପାଳକ ଭାବେ ଖ୍ୟାତ । ଶିବ ଓ ଶକ୍ତି ଏକ ଓ ଅଭିନ୍ନ । ଜୀବ ଓ ପରମ ମିଶ୍ରଣରେ ଏହି ସଂସାର ଗଠିତ । ଶିବ ପୁରୁଷ ଓ ଶକ୍ତି ନାରୀ । ଶିବ ମଙ୍ଗଳମୟ ଯାହାଙ୍କର ଦର୍ଶନରେ ସର୍ବପାପ ମୋଚନ ସହ ଯମ ଯନ୍ତ୍ରଣାରୁ ତ୍ରାହି ମିଳିଥାଏ । ସେ ମଧ୍ୟ ସର୍ବ ଦୁଃଖ ଶୋକକୁ ହରଣ କରି ପାରନ୍ତି । ସର୍ବ ଗ୍ରହରିଷ୍ଟକୁ ଦୂରୀଭୂତ କରି ପ୍ରାଣୀକୁ ସରସ ସୁନ୍ଦର କରି ଗଢ଼ି ତୋଳିବାରେ ସେ କେବେ ହେଲେ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ସେ ପରା ସର୍ବ ଶକ୍ତିଠାରୁ ଗରିୟାନ ! ମାନବର ଶ୍ରେଷ୍ଠ ଆରାଧ ଦେବଦେବ ମହାଦେବ ବାବା ଚନ୍ଦନେଶ୍ୱର ଭାବେ ପୂଜିତ ।

ଶିବ ଶଙ୍କରଙ୍କୁ ପଞ୍ଚାକ୍ଷର ମନ୍ତ୍ରରେ ଆବାହନ କରାଯାଏ । 'ନମଃ ଶିବାୟ' । 'ନ'ର ଅର୍ଥ ବ୍ରହ୍ମ ବା ପୃଥିବୀ, 'ମ'ର ଅର୍ଥ ବିଷ୍ଣୁ । 'ଶ'ର ଅର୍ଥ ରୁଦ୍ର ବା ଅଗ୍ନି । 'ବ'ର ଅର୍ଥ ମହେଶ୍ୱର ବା ବାୟୁ । 'ୟଃ'ର ଅର୍ଥ ସଦାଶିବ । ଜୀବ ଓ ଆକାଶ ସେ ହିଁ

ଧର୍ମ ରକ୍ଷକ । ସତ୍ୟ, ଶିବ, ସୁନ୍ଦର । ସର୍ବ ମୋକ୍ଷକାରୀ ତ୍ରିନୟନ ପ୍ରାଣୀଙ୍କୁ ଗତି ମୁକ୍ତି ପ୍ରଦାନ କରୁଥିବାରୁ ସେ ହିଁ ତ୍ରିଲୋଚନ । ଶଙ୍କରଙ୍କୁ ପୂଜା କରୁଥିବା ଭାଇ ଭଉଣୀମାନଙ୍କୁ ଶୈବ କୁହାଯାଏ । ସେ ତ ଅର୍ଦ୍ଧ ନାରୀଶ୍ୱର, ଅଯୋନୀ ସମ୍ଭୂତା, ଜନ୍ମମୃତ୍ୟୁର ଉର୍ଦ୍ଧ୍ୱରେ । ଏଣୁ ସେ ମୃତ୍ୟୁଞ୍ଜୟ ଓ ଶ୍ୱୟମ୍ଭୂ ଭାବେ ଖ୍ୟାତ । ତାଙ୍କର ଆଦି ଅନ୍ତ ନଥିବାରୁ ସେ ଅନନ୍ତ ଓ ପିତା ନଥିବାରୁ ସେ ପରମପିତା ।

ଆତ୍ମାର କୌଣସି ପରିବର୍ତ୍ତନ ନାହିଁ । ଶରୀର ବା କାୟା ନଷ୍ଟ ହୋଇଥାଏ । ଶରୀର ଏକ ଜଡ଼ ବସ୍ତୁ ଶରୀରରେ ଆତ୍ମା ଜାଗ୍ରତ ହେଲେ ଜଡ଼ ପିଣ୍ଡ ସଜୀବ ହୋଇଉଠେ । ସଃ ଜୀବ ଇତି 'ଶିବ' । ଯାହାର ଜୀବନ ଅଛି ସେ ହିଁ ଶିବ । ଜୀବ ମଣ୍ଡଳ ଭିତରେ ତାଙ୍କର ସ୍ଥିତିକୁ ମଧ ଉପଲବ୍ଧି କରାଯାଇପାରେ । ସେହି ସୂକ୍ଷ୍ମ ରୂପରେ ସବୁ କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟକୁ ପ୍ରତି ମୁହୂର୍ତ୍ତରେ ଦେଖିପାରନ୍ତି । ଏଣୁ ହେ ପ୍ରାଣୀ ସମାଜ ! ନିଜର କାର୍ଯ୍ୟ ଓ କର୍ମକୁ ସତ୍ୟ ପଥରେ ଅଗ୍ରସର କରିପାରିଲେ ମୁକ୍ତି ନିଜ ହାତ ମୁଠାକୁ ଆସିପାରିବ । ନଚେତ୍ କୁକର୍ମରେ ରତ ଥିଲେ ନର୍କ ଯନ୍ତ୍ରଣା ଭୋଗ କରି ଜୀବ ଜୀବଚକ୍ରରେ ପଡ଼ି ପୁନଃପୁନଃ ସହସ୍ର ଯୋନି ଭ୍ରମଣ କରି ମଧ ନିର୍ବାଣ ପାଇପାରେ ନାହିଁ । ହେ ଶୁଦ୍ଧି ଜ୍ଞାନୀ ମାନବ ସମାଜ ! ସତ୍ୟରେ ନିତ୍ୟ, ସତ୍ୟ, ଧର୍ମ, ନ୍ୟାୟ ଧାରଣାରେ ରହି ବାବା ଚନ୍ଦନେଶ୍ୱରଙ୍କ କୃପାଭିକ୍ଷା କର । ତାଙ୍କ ପଦାରବିନ୍ଦରେ ନିଜର ମନ, ପ୍ରାଣ ଓ ଶରୀରକୁ ସମର୍ପଣ କରିଚାଲ । ସେ ପୃଥିବୀ ତତ୍ତ୍ୱ, ଜଳତତ୍ତ୍ୱ, ଅଗ୍ନି ତତ୍ତ୍ୱ, ବାୟୁ ତତ୍ତ୍ୱ ଓ ଆକାଶ ତତ୍ତ୍ୱର ଉର୍ଦ୍ଧ୍ୱରେ । ବିଷପାନ କରି ବିଶ୍ୱକୁ ରକ୍ଷା କରିଥିବାରୁ ସେ ନୀଳକଣ୍ଠ ।

ଆମ୍ଭ ଦୃଷ୍ଟିଗୋଚରରେ ଦେଖୁଥିବା ଏହି ବିଶ୍ୱବ୍ରହ୍ମାଣ୍ଡର ଅଧୀଶ୍ୱର ଦେବାଧିରାଜ ହେଉଛନ୍ତି ଶ୍ରୀ ଶ୍ରୀ ଚନ୍ଦନେଶ୍ୱର ମହାଦେବ । ତାଙ୍କର ଆରାଧନା ଓ ଉପବାସ ଆମର କାମ୍ୟ । 'ଉପ' ଅର୍ଥ ନିକଟରେ । 'ବସ' ଅର୍ଥ ବାସସ୍ଥାନ କରିବା । ନିଜକୁ ଶଙ୍କରଙ୍କ ପାଦପଦ୍ମରେ ସଂପୂର୍ଣ୍ଣ ଭାବରେ ସମର୍ପଣ କରିଦେବା, ଜୀବନର ଖେଳ କୁଦ ଶେଷ ଦେହାନ୍ତେ ଶିବଲୋକରେ ସ୍ଥାନିତ ହେବା ସହ ମୋକ୍ଷ ପ୍ରାପ୍ତି ହେବା ହିଁ ଆମର ଲକ୍ଷ୍ୟ ହେବା ବିଧେୟ । ଶିବ ନାମକୁ ଜପାମାଳି କରି ସତ୍ୟର ଆଶ୍ରୟ ନେଇ ଆହାର, ନିଦ୍ରା, ମୈଥୁନ, ଲୋଭ, ମୋହ, ରାଗ ଓ ହିଂସାଠୁ ଦୂରେଇ ରହିବା ବିଧେୟ । ଏହାଦ୍ୱାରା ଶିବ କୃପା ମିଳିଥାଏ । ସେ ନିର୍ବିକାର, ନିଷ୍କ୍ରିୟ ଏବଂ ଅବିଚଳିତ ହୋଇଥିବାରୁ ତାଙ୍କୁ ସ୍ଥାଣୁ ମଧ କୁହାଯାଏ ।

ବର୍ଷ ମଧରେ ଶ୍ରୀ ଚନ୍ଦନେଶ୍ୱର ମହାଦେବଙ୍କ ପୂଜା ଆରାଧନା ପାଇଁ ଜାଗର ଅମାବାସ୍ୟାକୁ ସର୍ବଶ୍ରେଷ୍ଠ ଦିବସ ରୂପେ ଗ୍ରହଣ କରାଯାଏ । ଏହି ଦିବସରେ ଉଜାଗର

ରହି ଚନ୍ଦନଶ୍ୱେରଙ୍କୁ ପୂଜା କରି ସନ୍ତୁଷ୍ଟ କରାଇପାରିଲେ ସର୍ବ କାମନା ଓ ମନୋଭିଷ୍ଟ ପୂରଣ ହୋଇଥାଏ ।

ଉକ୍ତ ଦିବସରେ ଶିବ ନାମ ଚିନ୍ତନ, କୀର୍ତ୍ତନ ଓ ଲେଖନ କରି ଉଜାଗର ରହିବା ବିଧେୟ । ତାଙ୍କର ଅତିପ୍ରିୟ ତ୍ରିଶାଖା ବେଲ ପତ୍ର ସୁଗନ୍ଧିତ ପୁଷ୍ପ, ଘୃତାହୁତି ଓ ଦୀପ ପ୍ରଜ୍ୱଳନ କରି ନିଜକୁ ସଂପୂର୍ଣ୍ଣ ଭାବରେ ତାଙ୍କ ପାଦପଦ୍ମରେ ସମର୍ପଣ କରିଦେଲେ ଶିବକୃପା ସହ ସପ୍ତଜନ୍ମର ପାପ ଦୂରୀଭୂତ ହେବା ସଂଗେସଂଗେ ପିତୃଗଣମାନେ ମୋକ୍ଷପ୍ରାପ୍ତ ଓ ପୁନର୍ଜନ୍ମର ସମ୍ଭାବନା ଆଉ ରହେ ନାହିଁ ବୋଲି ବିଶ୍ୱାସ କରାଯାଏ ।

ଶିବରାତ୍ରିର ମହିମା ବିଷୟରେ ମହାଭାରତର ଶାନ୍ତି ପର୍ବରେ ବର୍ଣ୍ଣିତ ଉପାଖ୍ୟାନ ଇକ୍ଷ୍ୱାକୁ ବଂଶର ରାଜା ଚିତ୍ରଭାନୁ ଜମ୍ବୁଦ୍ୱୀପର ରାଜା ଥିଲେ । ତାଙ୍କ ସ୍ତ୍ରୀ ସତୀ ସୁଶୀଳା ଦେବୀ ଜାଗର ବ୍ରତ ପାଳନ କରୁଥିଲେ । ରାଜା ଥରେ ଅଷ୍ଟବକ୍ର ଋଷିଙ୍କୁ ଶିବରାତ୍ରିର ମହିମା ସଂପର୍କରେ ବୁଝାଇଥିଲେ । ପୂର୍ବଜନ୍ମରେ ସେ ଜଣେ ଶିକାରୀ ଥିଲେ । ଜୀବବଧ ହିଁ ତାଙ୍କର ପ୍ରଧାନ ଜୀବିକା ଥିଲା । ଥରେ ସେ ଶିକାର ଅନ୍ୱେଷଣରେ ଘୂରି ବୁଲୁବୁଲୁ ଚାରିଆଡ଼େ ଅନ୍ଧକାର ଘୋଟିଗଲା କିନ୍ତୁ ତାଙ୍କୁ ତାହା ଜଣାପଡ଼ି ନଥିଲା । ଆକାଶରେ ମଧ ଘନ ବାଦଲର ଛାଇ ଚତୁର୍ଦିଗକୁ ଆଚ୍ଛାଦିତ କରିଥିଲା । କୁଟୀର ମଧକୁ ଫେରିବାର ସମୟ ଜାଣିପାରିଲେ ନାହିଁ । ରାତ୍ର ହୋଇଯିବାରୁ ସେ ଭାବବିହ୍ୱଳରେ ସ୍ତ୍ରୀ ଓ ପିଲାଙ୍କ କଥା ଭାବିବାକୁ ଲାଗିଲେ । ନୟନରୁ ଅଜଣାଶ୍ରୁ ବହିବାକୁ ଲାଗିଲା । ହିଂସ୍ର ଜନ୍ତୁଙ୍କ କବଳରୁ ନିଜକୁ ରକ୍ଷା କରିବା ପାଇଁ ସେ ଏକ ବୃକ୍ଷକୁ ଚଢ଼ିଗଲେ । ଦୈବାତ୍ ଦୈବୀକୃପାରୁ ବୃକ୍ଷଟି ଥିଲା ବିଲ୍ୱ ବୃକ୍ଷ । ଏହା ପୂର୍ବ ଜନ୍ମର ସୁକୃତ ବୋଲି ଧରିବାକୁ ହେବ । ତଳକୁ ଚାହିଁ ଦେଖନ୍ତି ତ ବ୍ୟାଘ୍ରଟିଏ ତାଙ୍କୁ ଖାଇବା ଆଶାରେ ବୃକ୍ଷମୂଳରେ ଅପେକ୍ଷା କରିରହିଛି । ସେହି ବୃକ୍ଷ ମୂଳରେ ବହୁ ପୂର୍ବରୁ ଅପୂଜା ଶିବଲିଙ୍ଗଟିଏ ଥିଲା । ଆଖିର ଲୁହ ସହ ବର୍ଷାର ଜଳ ମିଶି ଶିବଲିଙ୍ଗକୁ ଧୌତ କରିବାକୁ ଲାଗିଲା । ନିଜର ଅଜାଣତରେ । ଭୟରେ ଶିବ ନାମ ଜପ କରି ଚିନ୍ତାରେ ବେଲ ପତ୍ର ମାନ ଛିଣ୍ଡାଇ ଫିଙ୍ଗିବାରୁ ଏହା ଶିବଲିଙ୍ଗ ଉପରେ ପଡୁଥିଲା ଉକ୍ତ ଦିବସଟି ମହାନ ପବିତ୍ର ଜାଗର ଦିବସ ଥିଲା । 'ନିଶିରାଣୀ' ଅବସାନ ପରେ ସେ ଦେଖନ୍ତି ତ ବ୍ୟାଘ୍ର ବୃକ୍ଷ ମୂଳରେ ନାହିଁ । ମନସ୍ତାପକରେ ଘରକୁ ଫେରିଲେ । ଶରୀର ରକ୍ତରଂଜିତ । ଏପଟେ ଯମଗଣ ଓ ଅନ୍ୟପଟେ ପ୍ରମଥ ଗଣ । ଦୁହିଁଙ୍କ ମଧ୍ୟରେ ଘମାଘୋଟ ଯୁଦ୍ଧ ହେଲା । ପ୍ରମଥଗଣ ଯୁଦ୍ଧରେ ବିଜୟୀ ହେଲେ । ଏମାନେ ସସମ୍ମାନରେ ମୋତେ କୈଳାସପୁରୀକୁ ଘେନିଗଲେ । ମୋର ସୌଭାଗ୍ୟ ରାତ୍ରି ଉଜାଗର ରହି ମୁଁ ଶ୍ରୀମହାଦେବଙ୍କୁ ମୋର ଅଜାଣତରେ ଜାଗର ଦିନ ଭକ୍ତି ଅର୍ଘ୍ୟ

ଅର୍ପଣ କରିଥିଲି । ଏଣୁ ମହାଦେବଙ୍କ ଆଶୀର୍ବାଦ କରୁଣାରୁ କ୍ଷଣିକ ପୁଣ୍ୟ ବଳରେ ଆଜି ଇକ୍ଷ୍ୱାକୁ ବଂଶରେ ଜନ୍ମ ଗ୍ରହଣ କରି ଚନ୍ଦ୍ରଭାନୁ ଭାବେ ରାଜଗାଦି ଉପଭୋଗ କରୁଅଛି ।

ମୋର ବ୍ୟାଧ ଜନ୍ମର ନାମ ସୁସ୍ୱର ଥିଲା । ଜ୍ଞାନ ଚକ୍ଷୁଦ୍ୱାରା ମୁଁ ମୋର ପୂର୍ବଜନ୍ମର ସ୍ମୃତିରୁ ଏ ବିଷୟରେ ଏହା ଜାଣି ପାରିଥିଲି । ଏଣୁ ହେ ସୁଧୀଜନ! ତୁମ୍ଭେମାନେ ନିଶ୍ଚୟ ଶ୍ରୀଶ୍ରୀ ମହାଦେବ ଚନ୍ଦନେଶ୍ୱରଙ୍କ ଶରଣାପନ୍ନ ହୁଅ, ପୂର୍ବଜନ୍ମର ସୁକୃତି, ପରଜନ୍ମର କର୍ମଫଳ ନେଇ ସଚେତନ ହୁଅ ।

ଶ୍ରୀ ଶଙ୍କରଙ୍କୁ ସାମାନ୍ୟ ଭକ୍ତି, ସତ୍ୟ ନିଷ୍ଠା, ବଚନ ଦ୍ୱାରା ସନ୍ତୁଷ୍ଟ କରାଯାଇପାରେ । କାୟ ମନୋବାକ୍ୟରେ ଧର୍ମକୁ ସାକ୍ଷୀ ରଖି ଶିବକାର୍ଯ୍ୟ କରିଯାଅ । ଶିବ ହିଁ ସତ୍ୟ ସ୍ୱରୂପ । ତେଣୁ ଜାଗର ରାତ୍ରିର ପ୍ରଥମ ପ୍ରହର ରଜୋଗୁଣ । ଏହା ପବିତ୍ର ସଂଧ୍ୟା ସମୟ (ଗୋଧୂଳି) । ଏହି ସମୟରେ ଶିବାର୍ଚ୍ଚନା କଲେ ସର୍ବ ଅଭୀଷ୍ଟ ପୂରଣ ହେବା ସହ ସର୍ବ କାର୍ଯ୍ୟରେ ସୁଫଳ ମିଳିଥାଏ । ଦ୍ୱିତୀୟ ପ୍ରହର ତମୋଗୁଣ । ଏହା ସଂଧ୍ୟାର ପରମୁହୂର୍ତ୍ତ । ଏହା ଶଙ୍କରଙ୍କର 'ଅଘୋର' ସ୍ୱରୂପ । ଏହି ସମୟରେ ଶିବଙ୍କୁ ପୂଜା କଲେ ରୋଗ ଶୋକ ଦୂର ହେବା ସଂଗେସଂଗେ ଅକାଳ ମୃତ୍ୟୁରୁ ରକ୍ଷାମିଳିବା ସହ ସୁସନ୍ତାନ ପ୍ରାପ୍ତି ହୋଇଥାଏ । ତୃତୀୟ ପ୍ରହର ସତ୍ତ୍ୱଗୁଣ । ଏହା ରାତ୍ରି ସମୟ । ଏହା ଶଙ୍କରଙ୍କର 'ବାମଦେବ' ସ୍ୱରୂପ । ଉକ୍ତ ପୂଜାରେ ସର୍ବ ଗ୍ରହରିଷ୍ଟ ଦୂରୀଭୂତ ହେବା ସହ ବାର୍ଦ୍ଧକ୍ୟ ଯନ୍ତ୍ରଣାରୁ ମୁକ୍ତି ମିଳିଥାଏ । ଚତୁର୍ଥ ପ୍ରହର ଗୁଣାତୀତ । ଏହା ରାତ୍ରିର ଶେଷ ପ୍ରହର । ଏହା ତାଙ୍କର ଶାନ୍ତ, ସଦାଶିବ ମୂଳସ୍ୱରୂପ । ଉକ୍ତ ପୂଜାରେ ଶଙ୍କରଙ୍କୁ ସନ୍ତୁଷ୍ଟ କରିପାରିଲେ ମୋକ୍ଷ ପ୍ରାପ୍ତି ମିଳିଥାଏ । ଏଣୁ ଜାଗର ଦିନ ଉଜାଗର ରହି ଶିବନାମ ଗାଇଗାଇ ଉପବାସରେ ଜାଗର ଦୀପ ଜାଳିବା ବିଧେୟ । ଜାଗ୍ରତର ଅନ୍ୟ ନାମ ଜାଗର । ଜୀବନର ବିକାଶରେ ଜାଗ୍ରତ ରହି ସତ୍ୟ, ଧର୍ମ, ନ୍ୟାୟ ଓ ବ୍ରହ୍ମଚର୍ଯ୍ୟ ପାଳନ କରି ଜୀବନ ରଥକୁ ଆଗକୁ ଆଗକୁ ଗଡ଼ାଇ ଚାଲ ।

ଅକାଳ ମୃତ୍ୟୁ ହରଣଂ ସର୍ବବ୍ୟାଧି ବିନାଶକଂ ଶିବ
ପାଦୋଦଙ୍କ ପୁଣ୍ୟଂ ଶିରସା ଧରୟାମ୍ୟହମ୍ ॥



# ମହତବାଣୀ-୧

* ନିଜ ପାପ ଓ ପୁଣ୍ୟର ପ୍ରଥମ ସାକ୍ଷୀ ନିଜ ମନ ପରେ ଆଖି ।
* ପାପର ଦଣ୍ଡକୁ ଭୟ କରି ପାପକ୍ରିୟାରୁ ଦୂରେଇ ରହିବା ଏହା ବ୍ୟକ୍ତିର ମହତପଣିଆ ।
* ଗୁଣହୀନ ଜୀବନ ପଶୁ ସଂଗେ ସମାନ ।
* କଣ୍ଟାର ଯନ୍ତ୍ରଣା ଅପେକ୍ଷା କୁବଚନର ଯନ୍ତ୍ରଣା ଅସହ୍ୟ ବେଦନା ବିଦାରକ ।
* କଟୁ ବଚନ ଜୀବନ ନେଇପାରେ କିନ୍ତୁ ଦୁଃଖ ଦିନେନା ଦିନେ ସୁଖକୁ ପାଖକୁ ଡାକି ଆସେ ।
* ନାରୀ ଉପାର୍ଜିତ ଧନକୁ ଯେଉଁ ପୁରୁଷ ଭକ୍ଷଣ କରେ ତାକୁ ଅଣପୁରୁଷ କୁହାଯାଏ ।
* କୁଳବଧୂ ବଂଶର ଅମୂଲ୍ୟ ରତ୍ନ । ସେ ଯଦି ଗୋଡ଼କାଢ଼ି ଦାଣ୍ଡରେ ଛିଡ଼ା ହେଲା ତା'ର ମହତ ଗଲା ଜାଣ ।
* ପିତା ମାତା ପତିତା ହେଲେ ବଂଶ କ୍ଷୟ ଅନିର୍ବାଯ୍ୟ । ଧନ ପାଇଁ କଳିଯୁଗେ ନାରୀର ମାନ ମହତକୁ ବିକି ପୁରୁଷମାନେ ଘର ତୋଳିବେ ।
* ଗର୍ଭ ସଂଚାର ସମୟରୁ ମା' ସନ୍ତାନର ଭାଗ୍ୟ ବିଧାତା ପାଲଟି ଥାଏ । ଗର୍ଭସ୍ଥ ସନ୍ତାନ ପିତାମାତାଙ୍କ ଚିନ୍ତନ ପ୍ରଭାବରେ ସୁପଥ ଓ କୁପଥକୁ ଅପଣେଇ ନିଏ ।
* ଗର୍ଭ ସଂଚାର ସମୟରୁ ସନ୍ତାନର ଭାଗ୍ୟ ବିଧାତା ଲେଖି ସାରିଥିବା ବେଳେ ଗ୍ରହବିପ୍ର ଅନ୍ଧାରରେ ବାଡ଼ି ବୁଲାଇ ମିଛରେ ଭଣ୍ଡି ବାର ବାର ଧନ ଖାଇ ଚାଲିଥାନ୍ତି ।
* ଅଦୃଶ୍ୟ ଓ ଐଶ୍ୱରିକ ଶକ୍ତିରେ ଭାଗ୍ୟ ଗତି କରି ଚାଲିଥାଏ, ଏହା ହିଁ ବିଧି ନିର୍ଘଣ୍ଟ ।
* ଗ୍ରହବିପ୍ରଙ୍କୁ ବିଶ୍ୱାସ କରି ଅନେକ ସମୟରେ ମନୁଷ୍ୟର ଜୀବନ ଅନ୍ଧକାର ପଥକୁ ଟାଣି ହୋଇଥାଏ ।
* ଗ୍ରହରତ୍ନ ମୁଦ୍ରିକା ଧାରଣ ଦ୍ୱାରା ଯଦି ଭାଗ୍ୟର ପରିବର୍ତ୍ତନ ହୁଏ କର୍ମହୀନ ଭାବରେ ନିଘୋଡ଼ ନିଦରେ ଶୋଇ ଦିବାସ୍ୱପ୍ନରେ ସୁଖକୁ ଉପଭୋଗ କରି ହୁଅନ୍ତା, ଏହା ବୃଥା ମରୀଚିକା ସଦୃଶ ।
* ସତ୍‌କର୍ମ, ସତ୍‌ବଚନ, ସତ୍‌ଚିନ୍ତା, ବ୍ରହ୍ମଚର୍ଯ୍ୟ ପାଳନ ଓ ହିଂସା ପରିତ୍ୟାଗ ଦ୍ୱାରା ହିଁ ଭାଗ୍ୟର ପରିବର୍ତ୍ତନ ହୋଇପାରେ, ଏହା ଧ୍ରୁବ ସତ୍ୟ ।

* ଯା'ର ମନ ସୁଦ୍ଧ ପୁତ ପବିତ୍ର ତା'ର ଗଂଗା ଜଳର ଆବଶ୍ୟକତା ନଥାଏ ।

* ପାପ କରି ଗଙ୍ଗାଜଳ, ପଞ୍ଚଗବ୍ୟ ପାନକଲେ ପାପ ଯାଏ ନାହିଁ । ପାପକୁ ପ୍ରକାଶ କରି ଏହାର ପୁନରାବୃତି ନ ହେବା ପାଇଁ ଯତ୍ନଶୀଳ ହେଲେ ପାପ ଆପଣାଛାଏଁ ଲିଭିଯାଏ ।

* ଜାତି ଶ୍ରେଷ୍ଠ ବ୍ରାହ୍ମଣ ବ୍ରହ୍ମକର୍ମ ଛାଡ଼ିଲେ ଚାଣ୍ଡାଳ ସହ ସମାନ ।

* କୁଳବଧୂ ପରପୁରୁଷର ଅଙ୍ଗ ଛୁଇଁଲେ ତାକୁ କୁଳଟା ବୋଲାଯାଏ ।

* ଗଂଗାଜଳଠାରୁ ପବିତ୍ର ପ୍ରେମ, ଏହା କାମନା ଶୂନ୍ୟ ହେବା ବିଧେୟ ।

* ପ୍ରଥମେ ନିଜେ ସଂସ୍କାରୀ ହୁଅ, ପରେ ଅନ୍ୟକୁ ସୁଉପଦେଶ ବାଣ୍ଟ ।

* ସନ୍ତାନକୁ ଗଢ଼ିବା ପୂର୍ବରୁ ପ୍ରଥମେ ପିତା ମାତା ସୁପଥର ଯାତ୍ରୀ ହେବା ଉଚିତ୍ ।

* ଦିବାସ୍ୱପ୍ନ ବ୍ୟକ୍ତିର ସର୍ବନାଶ ଆପଣାଛାଏଁ ହୋଇଥାଏ ।

* କଳିଯୁଗ ନାରୀ ଗର୍ବ ଅହଂକାରୀ ବିପଥଗାମୀ ।

* ବିଧି ନିର୍ଘଣ୍ଟ ଯାହା ତାକୁ ଅନ୍ୟଥା କରିବାର ଶକ୍ତି କାହାର ନାହିଁ ।

* କାମନା ଶୂନ୍ୟ ପ୍ରେମ ପ୍ରକୃତ ପ୍ରେମ ।

* ଶାରୀରିକ ଓ ଦୈହିକ ପ୍ରେମକୁ ପ୍ରକୃତ ପ୍ରେମ ପଦବାଚ୍ୟ କୁହାଯାଇ ନପାରେ ।

* 'ମୁଁ' ସୁଖ ପରିବର୍ତ୍ତେ ଦୁଃଖର କାରଣ ପାଲଟେ ।

* ମନ ଯା'ର ସ୍ୱଚ୍ଛ ଓ ପବିତ୍ର ତା'ର ସର୍ବତ୍ର ଜୟ ଜୟ ଶୁଣାଯାଏ ।

* ପାପ ପଙ୍କିଳ ମନ ସର୍ବଦା ପରାଜୟକୁ ନିମନ୍ତ୍ରଣ କରିଥାଏ ।

* ଶିଳା ପୂଜା ଅପେକ୍ଷା ମାନବ ଦେବ ପୂଜା ଶ୍ରେୟସ୍କର ।

* ପିତା ମାତାଙ୍କୁ ଇଷ୍ଟଦେବ ଭାବି ପୂଜା କଲେ ଅଭିଷ୍ଟ ଓ କାମନା ପୂରଣ ହୁଏ ।

* ନର ନାରାୟଣଙ୍କ ସେବାରେ ଆଶୀର୍ବାଦ ତତ୍କ୍ଷଣାତ୍ ପ୍ରାପ୍ତ ହେଉଥିବା ସମୟରେ ଶିଳା ପାଖରେ ଗୁହାରି କଲେ ଆଶୀର୍ବାଦକୁ ଅପେକ୍ଷା କରିବାକୁ ପଡ଼ିଥାଏ ।

* ପ୍ରାଣୀର ଦୁଃଖକୁ ନିଜର ଦୁଃଖ, ପ୍ରାଣୀର ସୁଖକୁ ନିଜର ସୁଖ ବୋଲି ଯେ ଭାବେ ସେ ହିଁ ମହାପୁରୁଷ ।

* ଦାନ ଦେଲେ ଶାନ୍ତି ମିଳେ, ଦାନ ଗ୍ରହଣ କଲେ ମନରେ ଆଶାନ୍ତି ଜାତ ହୁଏ ।

* ଦାନ ଦେବା ବ୍ୟକ୍ତି ଧର୍ମର ପାହଚ ଚଢୁଥିବା ସମୟରେ ଦାନ ଗ୍ରହିଣ ବ୍ୟକ୍ତି ଅଧର୍ମର ପାହାଚକୁ ଓହ୍ଲାଇ ଆସେ ।

* ନିଃଶ୍ୱାସକୁ ବିଶ୍ୱାସ କର ନାହିଁ, ସେ କାହାର ନୁହେଁ, କେତେବେଳେ ଠକି ଦେଇ ଚାଲିଯିବ ।

* ଯିଏ ଗର୍ବୀ, ଅହଂକାରୀ, କାମୁକ, ଲୋଭୀ, କପଟୀ, ଛଳନାକାରୀ, ଭଣ୍ଡ, ପ୍ରଜା ଶୋଷଣ, ଲାଞ୍ଚୁଆ, ମିଛୁଆ ଏମାନେ ନର ରାକ୍ଷସରେ ଗଣ୍ୟ ।

* ଯେଉଁ ନାରୀର ମନ ପରପୁରୁଷରେ ଆସକ୍ତ, ମୋହିନୀ ରୂପୀ, ସ୍ୱାମୀ ଦ୍ରୋହୀ, ମାୟାବିନୀ, ଗର୍ବୀ, ମମତାଶୂନ୍ୟ ଏମାନେ ନର ରାକ୍ଷାସୀ ସଦୃଶ ।

* ଯେଉଁ ନାରୀକୁ ଛୁଇଁଲେ ମନ ଆନନ୍ଦରେ ପୁଲକିତ ହୋଇଉଠେ, ଉଷ୍ଣତା ସମୟରେ ଶୀତଳତା ଶୀତଳତା ସମୟରେ ଉଷ୍ଣତା ମନ ଓ ଚିତ୍ତକୁ ହରଣ କରିପାରେ ସେ ହିଁ ସୁ-ନାରୀ ।

* ଯେଉଁ ନାରୀକୁ ଛୁଇଁଲେ ମନ ଓ ଚିତ୍ତ ଅସ୍ଥିର ହୋଇଉଠେ, ଆନନ୍ଦ ପରିବର୍ତ୍ତେ ନିରାନନ୍ଦ ଅନୁଭବ ହୁଏ ସେ ହିଁ କୁ-ନାରୀ ।

* ଯା'ର ପ୍ରାଣୀ ପ୍ରତି ଦୟା ନାହିଁ ତାକୁ ରାକ୍ଷସ ବୋଲାଯାଏ ।

* ପିଣ୍ଡୁ ପ୍ରାଣ ଗଲେ ଶବ, ଶିବ ଥିବାଯାଏ ସଜୀବ ।

* ନେତ୍ର ପାହାନ୍ତାରେ ଯାହା ଦେଖୁ, ଯାହା ଉପଭୋଗ କରୁ ସବୁ କ୍ଷଣିକ । କିନ୍ତୁ ଈଶ୍ୱରଙ୍କ ପ୍ରେମ ଅତୁଟ ।

* ଲୋଭୀ ମନୁଷ୍ୟ ନୀଚ କର୍ମ କରିବାକୁ ପଛାଏ ନାହିଁ । ଏଣୁ ସେ ସମାଜରେ ସମ୍ମାନହୀନ ବ୍ୟକ୍ତି ଭାବେ ଗଣ୍ୟ ହୁଏ ।

* ପ୍ରତି ଜୀବ ଓ ନିର୍ଜୀବ ମଧ୍ୟରେ ଯେ ରାମଙ୍କୁ ଦେଖିପାରେ, ତାଙ୍କ ସେବାରେ ନିଜ ଜୀବନକୁ ଉତ୍ସର୍ଗୀକୃତି କରିଥାଏ ସେ ମଧ୍ୟ ରାମ ଠାକୁର ପଦବାଚ୍ୟ ।

* ଜୁଆଡ଼ି, ନିଶାଡ଼ି, ହତ୍ୟାକାରୀ, ଜରାପୁରୁଷ (ଭାଡୁଆ), ବାରଙ୍ଗନା (ବିଟପି) ସହ ମିତ୍ରତା କଲେ ତାଙ୍କ ବ୍ୟାଧି ନିଜ ଅଙ୍ଗରେ ଆପାଣା ଛାଏ ପ୍ରବେଶ କରେ ।

* ଭିକ୍ଷୁକ, କ୍ଷୁଦାର୍ଥ, ଛୋଟା, ଲେଙ୍ଗଡ଼ା, କଣା, କୁଜା, ନିରାଶ୍ରୟ, ବୃଦ୍ଧ, ରୋଗାକ୍ରାନ୍ତ ବ୍ୟକ୍ତି, ପାଗଳ ଓ ତୃଷାର୍ଥୀ ବ୍ୟକ୍ତିଙ୍କୁ ଦାନ ଦେଲେ ଦାନର ପୁଣ୍ୟ ରହେ ।

* ମିଥ୍ୟା କହିବା ଓ କୁ-କର୍ମରେ ରତ ହେବା, ମିଥ୍ୟାକୁ ପ୍ରଶୟ ଦେବା ଓ କୁକର୍ମ ପାଇଁ ପ୍ରବର୍ତ୍ତାଇବା ମହାପାତକରେ ଗଣା ।

* ନିରବ ନିଶ୍ଚଳରେ ଈଶ୍ୱରଙ୍କ ନାମାମୃତକୁ ପାନ କଲେ ଈଶ୍ୱରଙ୍କ କୃପା ଆପଣାଛାଏ ଝରିପଡ଼େ ।

* ସତ୍ୟରେ ଚାଲିବା ଓ ସତୀତ୍ୱ ରଖିବା ନାରୀ ଈଶ୍ୱରୀ ସଂଗେ ସମାନ ।

* ସତ୍‌ଉପଦେଶ ଦେବାଠାରୁ ସତ୍‌ଉପଦେଶ ପାଳନ କରିବା ବ୍ୟକ୍ତି ମହାନ ।

* ସତ୍‌ଉପଦେଶ ପଢ଼ିଲେ ଜ୍ଞାନ ହୁଏ କିନ୍ତୁ ସତ୍‌ଉପଦେଶ ପାଳିଲେ ମୋକ୍ଷ ମିଳେ ।

* ସତୀନାରୀ ସପ୍ତପୁରୁଷ ଉଦ୍ଧାର କରେ ।

* ବ୍ରହ୍ମଜ୍ଞାନ ଦିଗ୍‌ଦର୍ଶକ ଅକ୍ଷୟ, ଅଜର, ଅମର ଓ ମୋକ୍ଷର କାରକ ।

* ଯେଉଁ ବିଦ୍ୟାଦ୍ୱାରା ବ୍ରହ୍ମଦର୍ଶନ ହେବା ସହ ବ୍ରହ୍ମରେ ଲୀନ ହେବାକୁ ସମର୍ଥ ସେ ହିଁ ପ୍ରକୃତ ବିଦ୍ୟା ।

* ଯେଉଁ ଜ୍ଞାନ ଦ୍ୱାରା ପ୍ରାଣୀ ଜନ୍ମଚକ୍ରରୁ ନିବୃତ ହୋଇ ଈଶ୍ୱରଙ୍କୁ ଦର୍ଶନ କରି ମୋକ୍ଷର ଦ୍ୱାରକୁ ଧାଉଁଥାଏ ସେ ହିଁ ପ୍ରକୃତ ଜ୍ଞାନ ।

* ଆତ୍ମଜ୍ଞାନ ଜନ୍ମିଲେ ମନୁଷ୍ୟ ଶୁଦ୍ଧ, ପୁତ, ପବିତ୍ର ହେବା ସହ ମୁକ୍ତି ରାଜ୍ୟରେ ପହଞ୍ଚିପାରେ ।

* ଯିଏ ଦୁଃଖରେ ରହି ଅନ୍ୟକୁ ସୁଖ ବାଣ୍ଟିଚାଲେ ସେ ହିଁ ପ୍ରକୃତ ସୁଖୀ ।

* ଯିଏ ସୁଖରେ ରହି ଅନ୍ୟକୁ ଦୁଃଖ ବାଣ୍ଟିଚାଲେ ସେହିଁ ପ୍ରକୃତ ଦୁଃଖୀ ।

* ଯିଏ ଚୋରି, ଠକି, ଲାଞ୍ଚ ନେଇଥାଏ ସେ ହିଁ ପ୍ରକୃତ ଗରିବ ।

* ଧର୍ମ ପଥ ଅନୁସରଣ କରି ଦୁଃଖ କଷ୍ଟରେ ଯେ ସଂସାର ବୋଝ ବୋହିଚାଲେ ସେ ହିଁ ପ୍ରକୃତ ଧନୀ ।

* ଆତ୍ମଜ୍ଞାନ, ବ୍ରହ୍ମଜ୍ଞାନ, ଚରିତ୍ରବାନ ପ୍ରାପ୍ତ ବ୍ୟକ୍ତି ହିଁ ପ୍ରକୃତ ଗୁରୁ ।

* ବିଷୟା ରସ ବିଷ ସଦୃଶ ।

* ଯାହାଙ୍କ ଚରିତ୍ର କଳଙ୍କ ଶୂନ୍ୟ, ସତ୍ୟ ଓ ଧର୍ମର ପରିପ୍ରକାଶ ପାଇଁ ନିଜ ଜୀବନ ପ୍ରାଣୀଙ୍କ ହିତସାଧନ ପାଇଁ ଉତ୍ସର୍ଗୀକୃତ ସେ ହିଁ ଭଗବାନ ।

* ନିଆଁକୁ ଦେଖିଣ ପତଙ୍ଗ ଯେପରି ଧାବମାନ ହୋଇ ମୃତ୍ୟୁକୁ ବରଣ କରେ, ବିଷୟା ରସରେ ମଜ୍ଜିଣ ମନୁଷ୍ୟର ବୟସ ବଢ଼ିଚାଲେ, କିନ୍ତୁ ଆୟୁଷ କମି କମି ମୃତ୍ୟୁର ନିକଟତର ହୋଇଥାଏ ।

* ମୃତ୍ୟୁ ଯଦି ସତ୍ୟ ସାଥିରେ କିଛି ନେବାକୁ ହେବ ନାହିଁ, ମନୁଷ୍ୟ ଜାଣି ଶୁଣି ପାପ କରେ, ସେ ପାପର ଭାଗୀ ଯଦି କେହି ନୁହଁନ୍ତି ତେବେ ମୋହ ମାୟାରେ ପଡ଼ି ନର୍କକୁ ଯିବା ଅପେକ୍ଷା ଦୃଢ଼ ସଂକଳ୍ପ ନେଇ ପାପ କର୍ମରୁ ବିରତ ହେବା ଜ୍ଞାନୀର ମାର୍ଗ ।

* ଚୋରି ନାରୀ ପରଦାରା ହରଣ ପ୍ରାଣୀ ସଂହାର, ହିଂସା, ମିଥ୍ୟା କଥନ, ଠକିବା, ଭଣ୍ଡିବା, ଲାଞ୍ଚ ଘୋଷ ନେବା ମହାପାତକ ।

* ଧନହୀନ ହେଲେ କଳିଯୁଗେ ନାରୀ ଅଙ୍କୁଶ ପ୍ରହାର କରିବାକୁ ପଛାନ୍ତି ନାହିଁ ।

* ଭଲପାଇଲେ ପଶୁ ସଂଗ ଛାଡ଼େ ନାହିଁ, କିନ୍ତୁ ଧନଲୋଭୀ ନାରୀ ବେଇମାନି ପାଲଟିଯାଏ ।

* କଳିଯୁଗେ ସ୍ୱାମୀ ସ୍ତ୍ରୀର ବଶ୍ୟତା ସ୍ୱୀକାର ନ କଲେ ପେଟେଣ୍ଟ ମେଡ଼ିସିନ ଦେବାକୁ ପଛାଏ ନାହିଁ ।

* କଳିଯୁଗେ ନାରୀ ଗୋଟିଏ ସ୍ୱାମୀ ମଲେ କୋଟିଏ ସ୍ୱାମୀର ଘର ତୋଳି ପାରନ୍ତି ।

* କଳିଯୁଗେ ନାରୀ ସ୍ୱାମୀ ସେବାଛାଡ଼ି ଭଣ୍ଡବାବାକୁ ନିଜର ଇଷ୍ଟଦେବ ଭାବି ପୂଜାର୍ଚ୍ଚନାରେ ସମୟ କାଟିବେ ।

* ସ୍ୱାମୀ ନିନ୍ଦା ଓ ସ୍ୱାମୀ ପାଦ କମଳରେ ମତି ନ ରଖିଥିବା ନାରୀ ବିଟପୀରେ ଗଣା ।

* ନାରୀକୁ କେବଳ ଉପଭୋଗ୍ୟ ବସ୍ତୁ ଭାବେ ଗ୍ରହଣ କରୁଥିବା ପର୍ଯ୍ୟନ୍ତ, ପୁରୁଷ ନାରୀର ବଶ୍ୟତା ସ୍ୱୀକାର କରି ମେଣ୍ଢା ପରି ପଛେ ପଛେ ଗୋଡ଼ାଉଥାଏ ।

* କୁଳବଧୂ କୁଳଟା ହେଲେ ନର୍କ ଯନ୍ତ୍ରଣାରୁ ବଳିଯାଏ ।

* ନାରୀ ଓ ପୁରୁଷ ଟଙ୍କାର ଦୁଇ ପାର୍ଶ୍ୱ ।

* ସତ୍ୟର ପରିପ୍ରକାଶ ପାଇଁ, ଏକ ମନ, ଏକ ପ୍ରାଣ, ସତ୍ୟ ଚିନ୍ତନରେ ସଦା ଜାଗ୍ରତ ଥିବା ବ୍ୟକ୍ତିମାନେ ଚତୁର୍ବର୍ଗ ଫଳ ପ୍ରାପ୍ତିର ଅଧିକାରୀ ହୋଇଥାନ୍ତି ।

* ଲୋକଦେଖାଣିଆ ସ୍ୱାମୀର ସେବାକରୀ ସ୍ୱାମୀକୁ ନିକାଞ୍ଚନରେ କୁବଚନ ପ୍ରହର କରୁଥିବା ନାରୀ ସାତଜନ୍ମଯାଏ ସ୍ୱାମୀ ମୁଖ ଦର୍ଶନରୁ ବଞ୍ଚିତ ରହେ ।

* ସ୍ୱାମୀ ସ୍ତ୍ରୀର ମଧୁର ବଚନ, ସତୀତ୍ୱ ଓ କର୍ତ୍ତବ୍ୟରେ ପ୍ରିତ ଥିଲେ ସେ ନାରୀ ଅହିସୁଲକ୍ଷଣିରେ ଇହଧାମ ତ୍ୟାଗ କରେ ।

* କ୍ଷଣିକ ସୁଖ ଓ ସ୍ୱାର୍ଥ ପାଇଁ ପରପୁରୁଷର ବସତା ସ୍ୱୀକାର କରୁଥିବା ନାରୀ ରାକ୍ଷସୀ ସହ ସମାନ ।

* ପରପୁରୁଷର ପ୍ରଶଂସା, ଚାଟୁବାଣୀ ସଦାମୁଖେ ଧରୁଥିବା ନାରୀ ଘାତିନୀ ଓ ବିଟପୀ ।

* ବିବାହିତା ନାରୀ ପରପୁରୁଷକୁ ସ୍ପର୍ଶ କରିବା, ଉଚିଷ୍ଟ ଭକ୍ଷଣ କରିବା, ଅନ୍ୟତ୍ର ପାଲଟା ବସନ ପିନ୍ଧିବା ଦ୍ୱାରା ସନ୍ତାନମାନଙ୍କୁ ମୃତ୍ୟୁ ମୁଖକୁ ଠେଲିଦେବାସହ ସମାନ ।

* ନାରୀ ବିପଥଗାମୀ ଅଶିକ୍ଷିତ ହେଲେ ସୁନାର ସଂସାର କ୍ଷଣକ ମଧ୍ୟରେ ରସାତଳଗାମୀ ହୁଏ ।

* ନାରୀ ପୂଜନୀୟା, ବନ୍ଦନୀୟା, ଧର୍ମ ପରାୟଣା ଓ ପତିବ୍ରତା ହେଲେ ସେ ନାରୀରୁ ନାରାୟଣୀ ପାଲଟିଥାଏ ।

* ବିବାହିତ ପୂର୍ବରୁ ନାରୀର ସତୀତ୍ୱ ଅପହରଣ ହୋଇଥିଲେ ସେ ନାରୀ ବିବାହିତ ପୁରୁଷକୁ ପ୍ରକୃତ ସୁଖ ଦେବାରେ ବଞ୍ଚିତ ହୋଇଥାଏ ।

* ଯେଉଁ ସ୍ତ୍ରୀ ପରିବାର ପାଇଁ ଭଲ, ବଂଧୁ, କୁଟୁମ୍ବ ପାଇଁ ଉତ୍ତମ, ସ୍ୱାମୀଠାରେ ଅତି ଉତ୍ତମ ସେ ହିଁ ପ୍ରକୃତ ସ୍ତ୍ରୀ ପଦବାଚ୍ୟ ।

* ଯେଉଁ ନାରୀ ସ୍ୱାମୀର ପ୍ରିୟପାତ୍ର ନୁହେଁ ସେ ନାରୀ ସଂସାରରେ କାହାରି ନୁହେଁ ।

* କୁଳବଧୂର ଗୁଣରେ ସମସ୍ତେ ଖୁସି ଥିବାବେଳେ ସ୍ୱାମୀ ଅସନ୍ତୋଷ ହେଲେ ସେ ନାରୀର ଜୀବନ ମୂଲ୍ୟହୀନ ହୋଇଥାଏ ।

* ଯେଉଁ ନାରୀର ଗୁଣରେ ସ୍ୱାମୀ ଖୁସି ସେ ପରିବାରରେ ଦୁଃଖର କଳାବାଦଲ ସ୍ପର୍ଶ କରେ ନାହିଁ ।

* ଧର୍ମ କ୍ଷଣିକ ଥିବା ପର୍ଯ୍ୟନ୍ତ ମଣିଷ ବଞ୍ଚେ, ଧର୍ମଛଡ଼ା ହେଲେ ମଣିଷ ମରେ ।

* ଏ ଜୀବନ କ୍ଷଣଭଙ୍ଗୁର, ନିଜକୁ ସର୍ବଦା ମହତ କାର୍ଯ୍ୟରେ ଉତ୍ସର୍ଗୀକୃତ କର ।

* ତୁମେ ଲୋକଙ୍କୁ ଦୁଇ ହାତରେ ଠକୁ ଥିବା ସମୟରେ, ଈଶ୍ୱର ତୁମକୁ ଚାରି ହାତରେ ନିଶ୍ଚୟ ଠକିବେ ।

* ଠକ ଧନ ସଂପତ୍ତି ଘରେ ଗଚ୍ଛିତ ଥିବା ଯାଏ, ସେ ଧନକୁ ଉପଭୋଗ କରୁଥିବା ପ୍ରାଣୀ ଅଶାନ୍ତିରେ ଘାଣ୍ଟି ହୁଏ ।

* ଅଧର୍ମ ଧନ, ପାପକୁ ଘୋଡ଼ାଇ ରଖିଲେ ଏହା ଦିନେନା ଦିନେ ପରି ପ୍ରକାଶିତ ହୁଏ ।

* ଦୁଃଖ ଓ ସୁଖକୁ ପ୍ରଭୁଙ୍କ ଆଶୀର୍ବାଦ ବୋଲି ଯେ ଧରିନିଏ ସେ ମହତ ନର ।

* 'ମୁଁ' କଂସ, କଂସ କରେ ସବୁ ନାଶ ।

* ଧର୍ମ ମାତୃ ଗର୍ଭରୁ ଜୁଇ ଯାଏ ନିଜର ବିଶ୍ୱସ୍ତ ମିତ୍ର ।



# ମହତବାଣୀ-୨

୧. ପିତା ମାତାଙ୍କ ସେବା ଈଶ୍ୱରଙ୍କ ସେବାଠାରୁ ଗରୀୟାନ ।

୨. ସତ୍ ମାର୍ଗରେ ଉପାର୍ଜିତ ଧନକୁ ଯେ ପ୍ରାଣୀର ହିତ ସାଧନରେ ଉତ୍ସର୍ଗୀକୃତ କରିଥାଏ ସେ ହିଁ ପ୍ରକୃତ ଧନୀ ।

୩. ପ୍ରାଣୀ ସେବାଠାରୁ ପୁଣ୍ୟ ଜଗତରେ କିଛି ନାହିଁ ।

୪. ସତ୍ପାତ୍ରରେ ଦାନ ଦେଇ ପ୍ରକାଶ କଲେ ମନରେ ଅହଂକାର ଓ ଗର୍ବ ଭାବ ଜାଗ୍ରତ ହୋଇ ଦାନର ମୂଲ୍ୟକୁ ନଷ୍ଟ କରିଥାଏ ।

୫. ବେଦ ମନ୍ତ୍ର ପାଠରୁ ସୁଫଳ ନ ମିଳିବାର ମୁଖ୍ୟ କାରଣ ଆଚାର୍ଯ୍ୟମାନେ ସଂସ୍କାର ବିହୀନ ସତ୍ୟ, ଅହିଂସା ଓ ବ୍ରହ୍ମଚର୍ଯ୍ୟ ଧରଣର ଅକ୍ଷମତା ।

୬. ଦେବାର୍ଚ୍ଚନାରେ ଶ୍ରଦ୍ଧା, ଭକ୍ତି, ନିଷ୍ଠା ଓ ଏକାଗ୍ରତା ନ ରହିଲେ ଦେବତାମାନଙ୍କ ଆଶୀର୍ବାଦ ପରିବର୍ତ୍ତେ ଅଭିଶାପ ପଡ଼ିଥାଏ ।

୭. ପ୍ରାଣୀର ମଙ୍ଗଳ ନିମିତ୍ତ ଈଶ୍ୱରଙ୍କ ନିକଟରେ ବାରମ୍ବାର ଗୁହାରି ଜଣାଇବାକୁ ଯଜ୍ଞ କୁହାଯାଏ ।

୮. ମାଆ, ଗୋ' ମାତା, ମାତୃଭୂମି ଓ ମାତୃଭାଷାର ସୁରକ୍ଷା ନିମିତ୍ତ ଯା'ର ଧ୍ୟାନ ନାହିଁ ସେ ହିଁ ଅଜ୍ଞାନ ।

୯. ପାଠ ପଢ଼ି ରାଜା ହୁଅ, ଗୋଲାମୀରେ ଶ୍ରଦ୍ଧା କରନାହିଁ ।

୧୦. ବିଦ୍ୟା ବିକି ଧନ ଉପାର୍ଜନ କରୁଥିବା ବ୍ୟକ୍ତିର ଜୀବନ ଦୁଃଖପୂର୍ଣ୍ଣ ।

୧୧. ସଦା ଉପର ହସ୍ତରେ ଦାନ ଦେଇ ଶିଖ, କିନ୍ତୁ ତଳ ହସ୍ତରେ କାହାରି ଦାନ ଗ୍ରହଣ କରନାହିଁ ।

୧୨. ସତ୍ୟ ଉପର୍ଜିତ ଧନ ସୁଖ ଶାନ୍ତି ଓ ସମୃଦ୍ଧି ଡେରିରେ ଆଣିଦେଲେ ମଧ୍ୟ ଏହା ଚିରସ୍ଥାୟୀ ।

୧୩. କାହାର ସମାଲୋଚନା କରନାହିଁ, ତୁମର ସମାଲୋଚନା ଦିନେନା ଦିନେ ନିଶ୍ଚୟ ତୁମ କାନରେ ପଡ଼ିବ ।

୧୪. ପ୍ରତି ମଣିଷର ସୁ-ଗୁଣକୁ ଗ୍ରହଣ କରି ଶିଖ । ତା'ର କୁ-ଗୁଣକୁ ଧ୍ୟାନ ଦିଅ ନାହିଁ ।

୧୫. ଆଶାହୀନ ସାହାଯ୍ୟର ସୁଧ, ମୂଳ ଦିନେ ନିଶ୍ଚୟ ଫେରି ପାଇପାରିବ ।

୧୬. ପ୍ରାଣୀ ପ୍ରତି ଦୟା ପ୍ରଦର୍ଶନ କଲେ ଈଶ୍ୱର ନିଜ ଉପରେ ଦୟା ଭାବ ରଖିବେ ।

୧୭. ବଚନ ରକ୍ଷା କରିବା ସତ୍ୟର ଅନ୍ୟଏକ ନାମ ।

୧୮. ସ୍ୱାମୀକୁ ଯେଉଁ ନାରୀ ବିପଥଗାମୀ କରାଏ ସେ ନାରୀ କୁଳଟା ।

୧୯. ପିତା ମାତାଙ୍କୁ ଠାକୁର ଆଜ୍ଞା କରି କର୍ତ୍ତବ୍ୟ କଲେ ସନ୍ତନମାନେ ସେମାନଙ୍କ କର୍ମ ଭୁଲିବେ ନାହିଁ ।

୨୦. ସଦା ଚିଡ଼ିବା, ରାଗିବା, ଅନ୍ୟ ଉପରେ ବିରକ୍ତି ଓ ମିଥ୍ୟା କହିବା ଦ୍ୱାରା ଜ୍ଞାନ ହ୍ରାସ ହୁଏ ଓ ମରଣକୁ ବରଣ କରିବାକୁ ପଡ଼ିଥାଏ ।

୨୧. ପାଠ ପଢ଼ି ସଦ୍‌ଜ୍ଞାନ ନଥିଲେ, ସେ ପାଠରେ କି ପ୍ରୟୋଜନ !

୨୨. ସତ୍ ଚିନ୍ତନରେ ପ୍ରଭୁଙ୍କୁ ସେବା କରୁଥିବା ବ୍ୟକ୍ତିଙ୍କୁ ଈଶ୍ୱର କେବେ କାହାର ଚାକର କରି ରଖନ୍ତି ନାହିଁ ।

୨୩. ତ୍ୟାଗ ହିଁ ପ୍ରକୃତ ଭାଇର ପରିଚୟ ।

୨୪. ସ୍ନେହ, ମମତା ଓ ଶ୍ରଦ୍ଧା ଦ୍ୱାରା ଯେ ସମସ୍ତଙ୍କୁ ବାନ୍ଧି ରଖେ ସେ ହିଁ ଭଗ୍ନୀ ।

୨୫. ପିତାଘର ଓ ଶାଶୁଘର ମାନ ମହତକୁ ଯେ ତଳେ ପକାଏ ନାହିଁ ସେ ହିଁ ପ୍ରକୃତ ସ୍ତ୍ରୀ ।

୨୬. ନାରୀ ମାଆ ଓ ଭଗ୍ନୀର ସମ୍ମାନ ଯେଉଁ ଦିନ ପାଇବ ସେ ଦିନ ମର୍ତ୍ତ୍ୟ ଦେବଭୂମି ପାଲଟି ଯିବ ।

୨୭. ସମସ୍ତ କଳାକୁ ଗ୍ରହଣ କରି ପ୍ରାଣୀକୁ ଶୁଭ୍ରତା ପ୍ରଦାନ କରନ୍ତି ସେ ହିଁ କଳାଠାକୁର ।

୨୮. ନାରୀ ଯେତେବେଳେ ଦିବସ ଓ ରଜନୀରେ ନିର୍ଭୟରେ ବାସକୁ ଫେରିପାରିବ ସେତେବେଳେ ରାମରାଜ୍ୟର ପରିକଳ୍ପନା ହୋଇ ପାରିବ ।

୨୯. ପ୍ରାଣୀର ମଙ୍ଗଳ ବିଧାନ ପାଇଁ ଯା' ଆଖିର ପଲକ ସଦା ଜାଗ୍ରତ ସେ ତ ଶ୍ରୀଜଗନ୍ନାଥ ।

୩୦. ଜ୍ଞାନର ଆଲୋକ ସତ୍ୟତା, ଧର୍ମର ଉଦ୍ରେକ ସତ୍‌ସଂଗ ।

୩୧. ମିଥ୍ୟା ଯାହାଙ୍କୁ ସ୍ପର୍ଶ କରିପାରେ ନାହିଁ ସେ ହିଁ ସତ୍ୟପୁରୁଷ ।

୩୨. କ୍ଷମାଶୀଳ ବ୍ୟକ୍ତି ସର୍ବତ୍ର ଆଦରଣୀୟ ।

୩୩. ଧର୍ମ ରୂପକ ଧନକୁ ଯେ ଗଚ୍ଛିତ କରିଚାଲେ ସେ ହିଁ ପ୍ରକୃତ ମନୁଷ୍ୟ ।

୩୪. ମିଥ୍ୟା ହିଁ ଅଧୋଗତିର କାରଣ ।

୩୫. ଯେ ବ୍ରହ୍ମଜ୍ଞାନୀ, କର୍ମିଷ୍ଠ, ସତ୍‌ମାର୍ଗୀ ଓ ବ୍ରହ୍ମଚର୍ଯ୍ୟ ପାଳନକାରୀ ସେ ହିଁ ପ୍ରକୃତ ଗୁରୁ ।

୩୬. ଠାକୁରଙ୍କୁ ପୂର୍ଣ୍ଣ ବିଶ୍ୱାସକଲେ ଆବଶ୍ୟକତାଠାରୁ ଅଧିକ ପ୍ରଦାନ କରିଥାନ୍ତି, ଅନାବଶ୍ୟକତାକୁ ହରଣ କରନ୍ତି ।

୩୭. ମନୁଷ୍ୟର କର୍ମଫଳକୁ ବିଚାର କରି ଈଶ୍ୱର ସୁଫଳ ଓ କୁଫଳ ପ୍ରଦାନ କରିଥାନ୍ତି ।

୩୮. ଈଶ୍ୱରଙ୍କୁ କିଛି ମାଗ ନାହିଁ, ଏତିକି ମାଗ ଥରେ ମାତ୍ର ଦର୍ଶନ ଦିଅ, ତୁମ ନାମ ଗାଇ ତୁମ କୋଳରେ ଏ ଜୀବ ଯାଉ, ଏହା ହିଁ ମୋର ଶେଷ ଭିକ୍ଷା ।

୩୯. କାମ, କ୍ରୋଧ, ଲୋଭ ଓ ମାୟା ନରକର ଦ୍ୱାର ।

୪୦. ସତ୍ୟ ଚତୁର୍ବର୍ଗ ଫଳ ପ୍ରାପ୍ତି ଉପରେ ପ୍ରତିଷ୍ଠିତ ।

୪୧. ଧର୍ମ ଓ ବିଜ୍ଞାନ ପରସ୍ପର ପରିପୂରକ ଓ ଟଙ୍କାର ଦୁଇପାର୍ଶ୍ୱ ।

୪୨. ଫୁଲର ମଧ୍ୟରେ ମହକ ଯେପରି ଲୁକ୍‌କାୟିତ ଥାଏ ମନୁଷ୍ୟ ଶରୀରରେ ନାରାୟଣ ସେହିପରି ଲୁକ୍‌କାୟିତ ଥାନ୍ତି ।

୪୩. ପବନ ଯେପରି ଈଶ୍ୱର ସେପରି । ଜଳର ସ୍ୱାଦ ଯାହା ଈଶ୍ୱର ତାହା ।

୪୪. ପଶୁକୁ ବିଶ୍ୱାସ କରାଯାଇ ପାରେ କିନ୍ତୁ ଅବିଶ୍ୱାସୀ ନର ଜୀବନ ନେଇପାରେ ।

୪୫. ପଣ୍ଡିତ ହୋଇ ସଂସ୍କାର, କ୍ରିୟା, କର୍ମ, ବ୍ରତକୁ ଠିକ୍ ଭାବେ ନପାଳି ସତ୍ ଉପଦେଶ ଦେବା ବ୍ୟକ୍ତି ହିଁ ମହାମୂର୍ଖ ।

୪୬. ମାଆ ଡାକ ସନ୍ତାନର ରକ୍ଷା କବଚ ।

୪୭. ଯେଉଁ ଧନ ବ୍ୟକ୍ତିକୁ ପ୍ରଦାନ କରି ପୁନଃ ଗ୍ରହଣ କରାଯାଏ ନାହିଁ ତାହା ଦାନ ।

୪୮. ବେଦ ବେଦାନ୍ତର ତତ୍ତ୍ୱକୁ ବୁଝି ସ୍ୱକର୍ମରେ ଲଗାଇ ସମାଜର ହିତ ସାଧନ ଯେ କରେ ସେ ଜ୍ଞାନୀ ।

୪୯. ସତ୍ୟ, ଧର୍ମ, ଅହିଂସା ବ୍ରହ୍ମକୁ ଯେ ଧରି ରଖିପାରେ ସେ ପୁରୁଷ ।

୫୦. ପୁରୁଷଠାରୁ ନାରୀ ଶ୍ରେୟଷ୍କର, କାରଣ ନାରୀ ସୃଷ୍ଟିର ଅଧିକାରୀ ।

୫୧. ଈଶ୍ୱର ସର୍ବତ୍ର ବିଦ୍ୟମାନ, ଯେ ଯେପରି ଭାବେ ଚିନ୍ତନ କରେ ସେ ସେପରି ଭାବେ ପାଏ ।

୫୨. ସବୁଫୁଲ ଏକ ଦିବସରେ ଥରେ ଫୁଟୁଥିବା ବେଳେ, ବାରଙ୍ଗନା ଫୁଲ ଏକ ଦିବସରେ ଏକରୁ ୧୨ ଥର ଫୁଟେ ।

୫୩. କାହାରିକୁ ହେୟ ଜ୍ଞାନ କର ନାହିଁ, ସମସ୍ତଙ୍କ ନିକଟରେ କିଛି ନା କିଛି ସୁଗୁଣ ଲୁକ୍‌କାୟିତ ଅବସ୍ଥାରେ ଅଛି, ତାହା ଅନ୍ୟ ପାଇଁ ହିତକର ।

୫୪. ସ୍ୱାମୀ, ସ୍ତ୍ରୀ ମଧ୍ୟରେ ସୁ-ସଂପର୍କ ଗଢ଼ିଉଠିବାକୁ ହେଲେ, ସ୍ନେହ, ଶ୍ରଦ୍ଧା, ବିଶ୍ୱାସ, ସତ୍ୟତା ଓ ମଧୁର ବଚନର ଆବଶ୍ୟକତା ଜରୁରୀ ।

୫୫. ସଦା କମ୍ କଥା କୁହ, ଅନେକ ସୁ-କର୍ମ କରି ଦେଖାଅ, ଯାହା ଦ୍ୱାରା ଆଗାମୀ ପିଢ଼ି ତୁମକୁ ମନେ ରଖିବ ।

୫୬. ପ୍ରତିଦିନ କିଛି ଧନ, ଖାଦ୍ୟ ଗରିବ, ଦୁଃଖୀ, ରଙ୍କୀ, ରୋଗୀ, ପଶୁ ପକ୍ଷୀଙ୍କ ସେବାରେ ଲଗାଅ କିନ୍ତୁ କୌଣସି ଭଣ୍ଡ ବାବାଙ୍କ ନିକଟକୁ ପ୍ରେରଣ କର ନାହିଁ ।

୫୭. ସତ୍ୟର ଆଶ୍ରୟ, ଈଶ୍ୱର ବିଶ୍ୱାସ ଉପରେ ନିଜେ ଗଢ଼ି, ସନ୍ତାନମାନଙ୍କୁ ଗଢୁଥିବା ବ୍ୟକ୍ତି ବାପା ପଦବାଚ୍ୟ ।

୫୮. ବ୍ୟବସାୟୀ, କାମିନୀ, କାଞ୍ଚନ, ନିଶାଗ୍ରସ୍ତ, ଲୋଭୀ ବ୍ୟକ୍ତି ସାଧୁ ପଦବାଚ୍ୟ ନୁହେଁ ।

୫୯. ରୋଗୀ; ବୃଦ୍ଧ, ଅନାଥ, ଭିକ୍ଷୁକମାନଙ୍କୁ ଦାନ ଦେବାଦ୍ୱାର ଗ୍ରହଦୋଷ ଖଣ୍ଡନ ହୁଏ ।

୬୦. ଗାଈ ଅମୃତ ପ୍ରଦାନ କରୁଥିବା ପର୍ଯ୍ୟନ୍ତ ସମସ୍ତଙ୍କର ପ୍ରିୟ ପାତ୍ର ଥାଏ କିନ୍ତୁ ତା' ପରେ କଂସେଇଖାନାକୁ ପଠେଇ ଦିଆଯାଏ । ଠିକ୍ ସେହିପରି ମନୁଷ୍ୟ ଧନ ଅର୍ଜନ କରୁଥିବା ପର୍ଯ୍ୟନ୍ତ ସମସ୍ତଙ୍କର ପ୍ରିୟପାତ୍ର ଥାଏ । ଏଥିରୁ ବିଚ୍ୟୁତ ହେଲେ ତାକୁ ଅଦରକାରୀ ଭାବି ମରଣ ମୁହଁକୁ ଠେଲିବାକୁ କେହି ପଛାନ୍ତି ନାହିଁ ।



# ରସଜ୍ଞାନ ତତ୍ତ୍ୱ

ବ୍ୟକ୍ତିମାନଙ୍କର ଶୃଙ୍ଖଳିତ ରୂପର ନାମ ପରିବାର । ସଂସ୍କୃତ 'କୋଷ' ଶବ୍ଦ "ପରିକ୍ରିୟତେ ତେନଂ" ଅର୍ଥାତ୍ ଯାହାଦ୍ୱାରା ବ୍ୟକ୍ତି ଘେରାଏ ତାହାକୁ ପରିବାର କୁହାଯାଏ । ପରିବାରର ମୁଖ୍ୟ 'ପିତା' । ପିତା ଶବ୍ଦ 'ଯାର କ୍ଷଣେ' ଧାତୁରୁ ବିଚ୍ଛିନ୍ନ, ଯେ ସନ୍ତାନର ପାଳନ କର୍ତ୍ତା ତାକୁ ପିତା କୁହାଯାଏ । ପବିତ୍ର ଗଂଗାଜଳ ସମ ପିତା ନାମ ଅମୃତ ତୁଲ୍ୟ ।

ମହାରାଜା ମନୁଙ୍କ ମତରେ-

ବେଦନା ଧୀତ୍ୟ ବେଦୌବା
ବେଦଂ ବାପି ଯଥାନ୍ତମସ
ଅବସ୍କୃତ ବ୍ରହ୍ମଚର୍ଯ୍ୟା
ଗୃହସ୍ଥାଶ୍ରମ ମାବସେତ୍ ।

ବ୍ୟକ୍ତି ସମସ୍ତ ବେଦ ଶାସ୍ତ୍ରକୁ ଅଧ୍ୟୟନ କରି ଗୃହସ୍ଥ ହେବା ବିଧେୟ । ପିତା ସତ୍‌ମାର୍ଗରେ ଧନ ଉପାର୍ଜନ କରି ଘରର ସମସ୍ତ ଅଭାବ ଅସୁବିଧାକୁ ଦୂର କରିବା ଉଚିତ୍ । ଅସତ୍ ଉପାର୍ଜିତ ଅନ୍ନ ସନ୍ତାନଗଣ ଭକ୍ଷଣ କଲେ ତା'ର କୁପ୍ରଭାବ ଦ୍ୱାରା ସନ୍ତାନଗଣ ବିଶୃଙ୍ଖଳିତ ହୋଇ ପରିବାର ସହ ସମାଜର ଅନିଷ୍ଟ କରିଥାନ୍ତି । ଆପଣାଛାଏଁ ରୋଗବ୍ୟାଧି ଶରୀର ମଧ୍ୟକୁ ପ୍ରବେଶ କରେ । ମଉଗର୍ବରେ ଅଳ୍ପାୟୁ ହେବା ସହ ନିଶାସକ୍ତ ହୋଇ ଈଶ୍ୱର ଚିନ୍ତନରୁ ଦୂରେଇ ଯାଆନ୍ତି । ଯେଉଁ ବ୍ୟକ୍ତି ସନ୍ନ୍ୟାସୀ ହୋଇ ବ୍ୟବସାୟ କରେ ସେଭଳି ବ୍ୟକ୍ତି ପିତା (ବାବା) ପଦବାଚ୍ୟ ନୁହେଁ । କେତେକ ସ୍ଥାନରେ ପିତାଙ୍କୁ ବାପା ବୋଲି ଡକାଯାଏ ଓ ବାପାଙ୍କୁ ମଧ୍ୟ ବାବା ବୋଲି ସମ୍ବୋଧନ କରାଯାଏ । ବାପା ଶବ୍ଦର ଉତ୍ପତ୍ତି ସଂସ୍କୃତ ବପ୍ତ ଧାତୁରୁ । ବପ୍ତମାନେ ବପନକାରୀ । ବପ୍ତ ଧାତୁରୁ ବାପା (ଓଡ଼ିଆ) ଶବ୍ଦ ଉତ୍ପତ୍ତି । ଯେ ବପନ କରିଛନ୍ତି ସେ ବପ୍ତା ବା ବାପା । ଜ୍ଞାନୀ ଶ୍ରେଷ୍ଠ ଯୋଗୀଙ୍କୁ ବାବା ମଧ୍ୟ କୁହାଯାଏ । ବାପା ଓ ବାବା ଏକ ଅଭିନ୍ନ

ବୋଲି ମନେହୁଏ । ଯେଉଁମାନେ ଜ୍ଞାନରୂପକ ମଞ୍ଜିକୁ ସମାଜରେ ବିତରଣ କରନ୍ତି ସେମାନେ ବାପା ବା ବାବା ପଦବାଚ୍ୟ । ବାପା ଗୃହସ୍ଥ ଓ ବାବା ସନ୍ନ୍ୟାସ ଜୀବନ ଅତିବାହିତ କରୁଥିଲେ ମଧ୍ୟ ଏମାନେ ଟଙ୍କାର ଦୁଇପାର୍ଶ୍ୱ ।

"ଜ୍ଞାନ ବୀଜ ପ୍ରଦାତାରୋ ବାବାଖ୍ୟା ଗୁରବଃ ସ୍ମୃତାଃ
ପାରାବାରେ ପଥାନାବଃ ସାରଭୂତା ଜଣସୁତି ।"

ଘରର ମୁଖ୍ୟ ବାପା ହେଲେ ମଧ୍ୟ ଘରକୁ ଶ୍ରୀମନ୍ଦିର କରି ଗଢ଼ିତୋଳିବାରେ ପିତାଙ୍କର ଭୂମିକା ଯେତିକି ମାତା (ମା')ଙ୍କର ଭୂମିକା ତା'ଠାରୁ ଅଧିକ ଗୁରୁତ୍ୱ । ବୈକୁଣ୍ଠ ସମାନ ଆହା ଅଟେ ଆମ ଘର, ପରସ୍ପର ମଧ୍ୟେ ସ୍ନେହ ଥାଏ ନିରନ୍ତର ।

ସମସ୍ତେ ସମସ୍ତଙ୍କର ଦୁଃଖ ଓ ସୁଖକୁ ବାଣ୍ଟି ନେବାରେ ଯେଉଁ ଆନନ୍ଦ ଅନୁଭବ କରନ୍ତି ତାହା ବୈକୁଣ୍ଠପୁରୀ ସହ ସମାନ । ପ୍ରତି ଅନ୍ନ ମୁଠା କୈବଲ୍ୟକଣିକା ହୋଇଉଠେ । ମନୁଷ୍ୟ ଦେହେ ଦିବ୍ୟଜ୍ଞାନ, ଦେଖି ସନ୍ତୋଷ ଭଗବାନ ॥ (ଭାଗବତ)

ମାତା ଆଦ୍ୟା ଶକ୍ତି । ସନ୍ତାନର ଦିଗ୍‌ଦର୍ଶିକା, ପାଳନ କର୍ତ୍ତା । ସୃଷ୍ଟି ହିଁ ତା'ର ଶ୍ରେଷ୍ଠମାର୍ଗ । ସେ ହିଁ ଦେଇପାରେ ମର୍ତ୍ତ୍ୟ ବୈକୁଣ୍ଠପୁରକୁ ଭଗବାନଙ୍କର ଅବତାର । ତା' ପାଇଁ ହସିଉଠେ ଧରାଧାମ । ନୂତନ ପୁଲକରେ ପୁଲକିତ ହୋଇ ବାଳକର କଣ୍ଠରୁ ଭାସି ଆସେ କୋକିଳର କଣ୍ଠ ଧ୍ୱନି । ତା' ପାଇଁ ବସନ୍ତର ଚୋରା ମଳୟ ବାସ୍ନାରେ ବାସ୍ନାୟିତ କରୁଥାଏ ଏ ସାରା ଜଗତ । ବ୍ରହ୍ମ ଏକ ଓ ଅଭିନ୍ନ । ବାଳକ ହିଁ ଭଗବାନ । ଭଗବାନ ହିଁ ବାଲ୍ ଗୋପାଲ୍ ।

ଦଶ(୧୦) ଜଣ ଉପାଧ୍ୟାୟଙ୍କ ଅପେକ୍ଷା ଆଚାର୍ଯ୍ୟ ଶହେ (୧୦୦) ଜଣ । ଆଚାର୍ଯ୍ୟଙ୍କ ଅପେକ୍ଷା ପିତା ହଜାରେ (୧୦୦୦) ଓ ପିତାଙ୍କ ଅପେକ୍ଷା ମାତା ଗୌରାବନ୍ୱିତ ଅଟନ୍ତି । ଯେ ନିର୍ମାଣ କରନ୍ତି ସେ ହିଁ ମାତା ।

ଉପାଧ୍ୟାୟନ ଦଶାଚାର୍ଯ୍ୟ ଆଚାର୍ଯ୍ୟାଣଂ ଶତଂପିତା
ସହସ୍ରତୁ ପିତୃତ୍ ମାତା ଗୌରବେ ଖ୍ୟାତି ରିଚ୍ୟତେ ॥

* * * * * *

ସମାଜରେ ନରନାରୀଙ୍କ ସ୍ଥାନ
କେହି କାହା ଠାରୁ ନୁହନ୍ତି ଭିନ୍ନ
ଜାତି ଭାଗ୍ୟ ଜାତି ଜନ ହାତରେ
ଜନ ସୃଷ୍ଟି ଏକା ମାତା ହିଁ କରେ ।
ନାରୀ ଯଦି ହେବ କର୍ତ୍ତବ୍ୟହୀନା
ଜାତିର ସୌଭାଗ୍ୟ ମିଥ୍ୟା କଳ୍ପନା ।

ଯେ ଜାତିର ଯୋଗ୍ୟ ରମଣୀ ଯେତେ
ସେ ଜାତିର ଶକ୍ତି ଅଧିକ ସେତେ ।
ଗୃହ ଶାନ୍ତି ଗୃହ ସୌଭାଗ୍ୟ ପାଇଁ
ଗୃହର ଗୃହିଣୀ ଏକାନ୍ତ ଦାୟୀ ।
ସୁନା ସଂସାରକୁ ଗଢ଼ନ୍ତି ନାରୀ
ନାହିଁ ସେହି ଶକ୍ତି ଆଉ କାହାରି ।

ନାରୀର ଅନ୍ୟରୂପ ଜନନୀ, ଭଗିନୀ ଓ ଜାୟା । ପତ୍ନୀ ଗୃହର ଲକ୍ଷ୍ମୀ, ନୟନର ଅମୃତମଣି । ଯେଉଁ ପତ୍ନୀର ଗାତ୍ର ସ୍ପର୍ଶରେ ଶରୀରରେ ଅପାର ଆନନ୍ଦ ଓ ପୁଲକ ଖେଳିଯାଏ, ଆପଣାର ଶରୀର ଚନ୍ଦନ ପରି ବୋଧହୁଏ, ଏପରି ପତ୍ନୀ ପ୍ରିୟତମା ଯୋଗ୍ୟା ।

ସୁପତ୍ନୀ–

କ୍ରୋଧେ ଦାସୀ ରତେ ବେଶ୍ୟା ଭୋଜନେ ଜନନୀ ସମା ।
ସମରେ ମନ୍ତ୍ରଣା ବୁଦ୍ଧି ସା ନାରୀ ପ୍ରାଣବଲ୍ଲଭା ।

କୁପତ୍ନୀ–

କ୍ରୋଧେ ବ୍ୟାଘ୍ରି ରତେ ସର୍ପ ଭୋଜନ ଯୋଗୀନୀ ସମା
ସମରେ ଶତ୍ରୁତା ବୁଦ୍ଧି ସାଃ ନାରୀ ପ୍ରାଣଘାତିକା ।

(ଚାଣକ୍ୟ)

ନକ୍ଷତ୍ରଗଣଙ୍କ ଭୂଷଣ ଚନ୍ଦ୍ର ଯେପରି ନାରୀମାନଙ୍କର ଭୂଷଣ ପତି ପରମେଶ୍ୱର ସେପରି ହେବା ବିଧେୟ । କିନ୍ତୁ ଆଜି ସମାଜରେ ବହୁ ବ୍ୟତିକ୍ରମ ଦେଖାଯାଏ । ନାରୀ ସ୍ୱାଧୀନତା ନାମରେ ସ୍ୱେଚ୍ଛାଚାରିତାକୁ ଆପଣେଇ ନେଇ ବିଷର ମଞ୍ଜିବୁଣି ଚାଲିଛି । ଜୀବନ ଜୀବିକାର ଦ୍ୱାହି ଦେଇ ଅନେକ ନାରୀ ଲମ୍ପଟମାନଙ୍କ ବାହୁବଂଧନରେ ଆବଦ୍ଧ ହୋଇ ନିଜ ପତିଙ୍କୁ ହେୟ ଜ୍ଞାନ କରି ଅତ୍ୟାଚାର କରିଚାଲିଛନ୍ତି । ଏହା କ'ଣ ଭାରତୀୟ ସଂସ୍କୃତିରେ ସତୀ ନାରୀର ମହାନୀୟତା, ନା ଏମାନଙ୍କ ପାଇଁ ଅଛି ବାଡ଼ ବା ବତା । ଚୋର ମା' ଲାଜେ ନ କାନ୍ଦେ, ଯଦି କାନ୍ଦେ ଆଖି ମଳି କାନ୍ଦେ । ଶୃଙ୍ଖଳା ବିହୀନ ନାରୀକୁ ଅଣ୍ଡିରେ ଭରିଲେ ଶେଷ ପରିଣତି ଯାହା ହୁଏ ତାହା ଅନୁମେୟ । ପବିତ୍ର ବିବାହ ଶାହାନାଇ ବାଜିବା ପୂର୍ବରୁ ନିଜର ବିବେକକୁ ଶତବାର ପଚାରିବା ଉଚିତ ମୋ' ପାଇଁ ବ୍ରହ୍ମ ବିଦ୍ୟା ଜ୍ଞାନୀ ସତୀ ନାରୀ ଦରକାର, ଯେ ଚତୁର୍ବର୍ଗ ଫଳପ୍ରାପ୍ତିର ପଥ ଦେଖାଇବାରେ ସହାୟକ ହୋଇଥାଏ । ନା ଚାରି ଦଉଡ଼ି କଟା ନାରୀର ଆବଶ୍ୟକ !

ଯେଉଁଠାରେ ନାରୀମାନେ ପତିପରାୟଣା
ସ୍ୱାମୀ ଚିନ୍ତା ସ୍ୱାମୀ ପୂଜା ସ୍ୱାମୀର ଭାବନା
ନିଜ ପ୍ରାଣ ବିକି ଅଛି ସ୍ୱାମୀ ପାଦ ତଳେ
ଏପରି ଗୃହକୁ ଲକ୍ଷ୍ମୀ ନ ଛାଡ଼ନ୍ତି ହେଲେ ।
(ଜୈମିନୀ ଭାରତ)

ନାରୀର ସ୍ୱାମୀ ହିଁ ତା'ର ତୀର୍ଥ, ବ୍ରତ, ତପସ୍ୟା, ଦାନ ଓ ଶ୍ରେଷ୍ଠ ଗୁରୁ । ସ୍ୱାମୀର ସେବା ବଡ଼ ଠାକୁରଙ୍କ ସେବାଠାରୁ ଗରୀୟାନ । ମଧୁର ବଚନ, ପ୍ରିୟ କାର୍ଯ୍ୟ ଓ ପତିର ଆଜ୍ଞାନୁବର୍ତ୍ତିନୀ ହୋଇ କାର୍ଯ୍ୟ କରିବା ପତି ଧର୍ମ ଅଟେ । ପତିର ଜ୍ଞାତି କୁଟୁମ୍ବ ଓ ବଂଧୁମାନଙ୍କୁ ସ୍ନେହ ଶିକୁଳିରେ ବାନ୍ଧିରଖିବା ସ୍ତ୍ରୀର ଧର୍ମ । ପତିବ୍ରତା ନାରୀ ଜୀବ ଗଲେ ମଧ୍ଧ ପତିର ନିନ୍ଦା ଗାନ କରେ ନାହିଁ । ପତି ନିନ୍ଦା ଶୁଣେ ନାହିଁ । ତାଙ୍କୁ କ୍ରୂର ଦୃଷ୍ଟିରେ ଦେଖେ ନାହିଁ । ସ୍ତ୍ରୀଲୋକ କୌଣସି ଯଜ୍ଞ, ବ୍ରତ, ଉପବାସ କରିବା ଅନୁଚିତ । ସ୍ୱାମୀ ପ୍ରିତ ହେଲେ ସ୍ତ୍ରୀମାନେ ଅଚିରେ ବ୍ରହ୍ମପଦ ଲାଭ କରିପାରନ୍ତି ।

ଜୀବ ଭର୍ତ୍ତରି ଯା' ନାରୀ ଉପୋଷ୍ୟ ବ୍ରତଚାରିଣୀ
ଆୟୁଷ ହରତେ ଭର୍ତ୍ତୁଃ ନାରୀ ନରକଂ ବ୍ରଜେତ୍ ।
(ଅତ୍ରି ସଂହିତା)

ଯେଉଁ ନାରୀ ସ୍ୱାମୀ ଜୀବିତ ଥାଇ ଉପବାସ ବ୍ରତ କରେ ତା'ର ଆୟୁଷ କମିଯାଏ ଓ ନର୍କଗାମୀ ହୁଏ ।

ଶାଶୂ ଶ୍ୱଶୁର ୟୋଃ ପାଦୌ ତୋଷୟତି ଗୁଣାନ୍ୱିତା
ମାତାପିତୃପରା ନିତ୍ୟଂ ଯା ନାରୀ ସା ତପୋଧନ । (ମନୁ)

ପତିବ୍ରତାନାରୀ ଶାଶୂ ଶ୍ୱଶୁର ଓ ପିତାମାତାଙ୍କ ପଦସେବା କରେ । ସତ୍ୟବଚନ, ସତୀତ୍ୱ ଓ ଧର୍ମର ଆଶ୍ରା ନେଇ ସର୍ବପ୍ରିୟ ଭାଜନ ହୁଏ । ସ୍ୱାମୀର ବଶତା ସ୍ୱୀକାର ସହ ଦେବ ତୁଲ୍ୟ ସେବା ଶୁଶ୍ରୂଷାରେ ନିମଗ୍ନ ଥାଏ ।

"ଶୁଶ୍ରୂଷା ପରିଚର୍ଯ୍ୟାଞ୍ଚ ଦେବତୁଲ୍ୟାଂ ପ୍ରକୁର୍ବତୀ
ବେଶ୍ୟାଭାବେନ ସୁମନା ସୁବ୍ରତା ସୁଖଦର୍ଶନା ।

ସେହି ନାରୀ ଅୟିସୁଲକ୍ଷଣୀ ହୋଇ ବୈକୁଣ୍ଠ ପ୍ରାପ୍ତି ହୁଏ । ଏଣୁ ଦୁହିତା ଦୁଇକୁଳକୁ ହିତା । ନାରୀ ସର୍ବଂସହା, ମାତୃସ୍ୱରୂପା, ପୂଜନୀୟା ଓ ବନ୍ଦନୀୟା । ବଂଶରକ୍ଷା ନିମିତ୍ତ ସୁନାରୀର ଆବଶ୍ୟକ । ନାରୀ ଉପଭୋଗ୍ୟା ବସ୍ତୁ ନୁହେଁ । ପୁତ୍ର ସନ୍ତାନ ଜାତପରେ ବ୍ରହ୍ମଚର୍ଯ୍ୟ ପାଳନ, ବ୍ରହ୍ମବିଦ୍ୟା ଓ ବ୍ରହ୍ମଦର୍ଶନ ଜରୁରୀ । (ପରଂବ୍ରହ୍ମ)

ନିରଞ୍ଜନ, ନିଃ + ଅଞ୍ଜନ (ଅଞ୍ଜନ ଅର୍ଥାତ୍ ମଳି) ଯିଏ ମଳ ଦୋଷ ବିହୀନ ଶୁଭ୍ର ସେ ହିଁ ବ୍ରହ୍ମ) । ନାରାୟଣ (ନାର + ଅୟନ) ନାର- ଜୀବସମୂହ, ଆୟନ- ଆଶ୍ରୟ । ଅର୍ଥାତ୍ ପରଂବ୍ରହ୍ମ, ପରମେଶ୍ୱର, ପରଂବ୍ରହ୍ମ ନରକାତ୍ ତ୍ରାୟତେ ଯସ୍ମିନ୍ ସଃ ନାରାୟଣଃ" ଯାହାଙ୍କୁ ବ୍ୟକ୍ତ କରିବା ଅସମ୍ଭବ ଯାହାଙ୍କ ଗୁଣ ଅଲେଖ । ଯାହାଙ୍କର ଆଦି ଅନ୍ତ ଗୁଣ- ମହାତ୍ମା କୌଣସି ପ୍ରକାରର ରୂପ ବର୍ଣ୍ଣ ଧରି ଲେଖି ହୁଏ ନାହିଁ । (ଅରୂପ- ପଞ୍ଚଭୂତାତୀତ) ସେ ହିଁ ପରଂବ୍ରହ୍ମ ପରମାତ୍ମା । ବ୍ରହ୍ମ ଦର୍ଶନରେ ବାଧା ସୃଷ୍ଟି ହେଲେ "ପୁତ୍ର (ପୋଷଣ କ୍ଷମ) ନିବେଶୀ ପତ୍ନୀ ପାଶେ ଅଥବା ଚଳିବ ସନ୍ନ୍ୟାସେ ।" (ଭାଗବତ) ମୋହାନ୍ଧ ବ୍ୟକ୍ତିମାନେ ନାରୀକୁ ସୁଖଜ୍ଞାନ କରି ମରଣ ପର୍ଯ୍ୟନ୍ତ ପାଶରୁ ଅନ୍ତର କରନ୍ତି ନାହିଁ । କିନ୍ତୁ ପରିଣତ ଶରୀର ରୋଗଗ୍ରସ୍ତ ହୁଏ । ନାରୀ କାମିନୀକୁ ସୁଖର ସଂପଦ ବୋଲି ଭାବିବା ଅନୁଚିତ । କାରଣ ଏହା ରକ୍ତ ମାଂସ ମେଦର ବିକାର ଅଟେ । ଏହାକୁ ଚନ୍ତା କରିବା ନିତାନ୍ତ ଦରକାର ।

"ସୁଖତଃ କ୍ରିୟତେ ରାମାଭୋଗଃ ପଶ୍ଚାଦ୍ ଭବତି
ଶରୀରେ ରୋଗଃ ଯଦ୍ୟପି ଲୋକେ ମରଣଂ ଶରଣଂ ତଦର୍ଷେ
ନ ମୁଞ୍ଚତି ପାପାଚରଣମ୍ ।।
ନାରୀସ୍ତନ ଭରଣା ଭିନିବେଶଃ ମିଥ୍ୟାମାୟା ମୋହାବେଶଃ
ଏତନ୍ମାଂ ସବସାଦି ବିକାରଂ ମନସି ବିଚାରୟ ବାରଂବାରମ୍ ।
(ମୋହକୁଠାରମ୍)

* * * * * *

ନକ୍ଷତ୍ର ଭୂଷଣଂ ଚନ୍ଦ୍ରଃ ନାରୀଣାଂ ଭୂଷଣଂ ପତିଃ
ପୃଥିବୀ ଭୂଷଣଂ ରାଜା ବିଦ୍ୟା ସର୍ବତ୍ର ଭୂଷଣଂ ।
(ଚାଣକ୍ୟ)

ବ୍ରହ୍ମ ବିଦ୍ୟା ଜ୍ଞାନୀ ସଂଗେ ରାଜପଣ ସମ କକ୍ଷ ନହେଁ । ଯେଉଁ ବ୍ୟକ୍ତି ଏହାକୁ ସମ ମଣେ ତା'ଠାରୁ ମୂର୍ଖ ଆଉ କେହି ନାହିଁ । ସେ ମହାମୂର୍ଖରେ ଗଣା ।



# ଠାକୁର ଶ୍ରୀଚୈତନ୍ୟ

ନାମ ହିଁ ଶ୍ରେଷ୍ଠ ଧାମ । ସର୍ବପାପ ମୋଚନକାରୀ ଏହି ନାମର ଗୂଢ଼ ରହସ୍ୟ ସର୍ବବ୍ୟାପକ ନାମ ମଧ୍ୟରେ ରୂପ, ଅରୂପ, ଦିବ୍ୟଜ୍ୟୋତି, ବିଶ୍ୱନିୟନ୍ତା ଭଗବାନ ବିରାଜିତ । କଳିଯୁଗର ମହୋଦଧି ମୁକ୍ତି ପ୍ରଦାନ କରି ମନ୍ତ୍ର ଅଟେ ନାମ ।

ନାମକୁ ଚିହ୍ନିଲେ ଜାଣି, ପାଷାଣ ହୁଅଇ ପାଣି
କାଷ୍ଠ ପଲ୍ଲବନ୍ତି ଗୋ କୁସୁମ ଫୁଟନ୍ତି । (ଭୀମଭୋଇ)

ବୈଷ୍ଣବ ଧର୍ମ ମୁଖ୍ୟତଃ ଦୁଇଟି ସାଧନା ଦ୍ୱାରା ପରିବ୍ୟାପକ । ଓଡ଼ିଶୀ ବୈଷ୍ଣବଧାରୀ ଓ ଗୌଡ଼ୀୟ ବୈଷ୍ଣବଧାରୀ । ଓଡ଼ିଶାର ଜ୍ଞାନ ମିଶ୍ର ଭକ୍ତି ଅନୁସରଣକାରୀ ପଞ୍ଚସଖା ଓ ସେମାନଙ୍କ ଅନୁଗାମୀ ବୈଷ୍ଣବମାନେ ଓଡ଼ିଶୀ ବୈଷ୍ଣବ ଏବଂ ଚୈତନ୍ୟଙ୍କ ଅନୁଗାମୀ ରାଗାନୁଗାମୀ ବା ଶ୍ରଦ୍ଧା ଭକ୍ତି ଅନୁସରଣକାରୀ ବୈଷ୍ଣବଗଣ ଗୌଡ଼ୀୟ ବୈଷ୍ଣବ ଭାବେ ପରିଚିତ । ଓଡ଼ିଶୀ ବୈଷ୍ଣବ ଗୋଷ୍ଠୀ ଦ୍ୱାରା ହରିନାମ ୮, ରାମନାମ ୪, ଓ କୃଷ୍ଣନାମ ୪, କଳି କଲୁଷ ନିବାରଣକାରୀ ମନ୍ତ୍ରରାଜ ବା ଷୋଳ ନାମ ବତିଶି ଅକ୍ଷର ତତ୍ତ୍ୱ ମହାମନ୍ତ୍ର ଭାବେ ଗ୍ରହଣ କରାଯାଏ- କିନ୍ତୁ ଚୈତନ୍ୟଙ୍କର ଜ୍ଞାନ ମିଶ୍ରା ସାଧକ ଗଣଙ୍କ ଦ୍ୱାରା ଗୌଡ଼ୀୟ ବୈଷ୍ଣବ ଗୋଷ୍ଠୀ ଦ୍ୱାରା ମନ୍ତ୍ରରାଜ ଭାବେ:-

ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ
ହରେ ରାମ ହରେ ରାମ ରାମ ରାମ ହରେ ହରେ ।

ଉକ୍ତ ନାମକୁ ଜପକରି କଳିର ପ୍ରଭାବରୁ ମୁକ୍ତି ପାଇବା ପାଇଁ ଏହାକୁ ସର୍ବଶ୍ରେଷ୍ଠ ମହୋଦଧି ଭାବେ ଗ୍ରହଣ କରାଯାଏ । ଏହି ମହାମନ୍ତ୍ରକୁ ପ୍ରତି ପୁରେ ପୁରେ ପହଞ୍ଚାଇବାରେ ଶ୍ରୀଚୈତନ୍ୟଙ୍କ ଅବଦାନ ମାନବ କଲ୍ୟାଣ ନିମିତ୍ତ ଅଭିପ୍ରେତ ।

ଶ୍ରୀଚୈତନ୍ୟ ୧୪୦୭ ଶତାବ୍ଦୀର ଫାଲଗୁନ ପୂର୍ଣ୍ଣିମା ତିଥିର ସିଂହ ଲଗ୍ନ, ଫାଲ୍‌ଗୁନି ନକ୍ଷତ୍ରରେ (ତା. ୧୮.୦୨.୧୪୮୬ ରିଖ) ବଙ୍ଗଦେଶର ନବଦ୍ୱୀପରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଥିଲେ ଜଗନ୍ନାଥ ମିଶ୍ର ଓ ମାତା ଥିଲେ ଶଚୀଦେବୀ । ଜଗନ୍ନାଥ ମିଶ୍ର ଉତ୍କଳୀୟ ବ୍ରାହ୍ମଣ ଥିଲେ । ତାଙ୍କର ପୂର୍ବପୁରୁଷମାନେ ଯାଜପୁରର ଅଧିବାସୀ ଥିବାର ଜଣାଯାଏ । ଜଗନ୍ନାଥ ମିଶ୍ରଙ୍କ ପିତାମହ ମଧୁକର ମିଶ୍ରଙ୍କର ରାଜା ପ୍ରତାପ ରୁଦ୍ର ଦେବଙ୍କ (ଭ୍ରମର ଦେବ (ଅପର ନାମ)) ସହିତ ମନମାଳିନ୍ୟ ହେବା

ହେତୁ ୧୪୫୧ ଖ୍ରୀ.ଅ ଯାଜପୁର ଛାଡ଼ି ସେମାନେ ସିଲହଟ ଜିଲ୍ଲାକୁ ପଳାଇ ଯାଇଥିଲେ । ସେଠାରେ ସେ ଦକ୍ଷିଣରେ ଅବସ୍ଥିତ 'ବଦଗଙ୍ଗ' ଗ୍ରାମରେ ବସତି ସ୍ଥାପନ କରିଥିଲେ । ମଧୁକରଙ୍କ ପୁତ୍ରଙ୍କ ମଧ୍ୟରେ ଉପେନ୍ଦ୍ର ଥିଲେ ଜ୍ୟେଷ୍ଠ । ସେ ସାତପୁତ୍ରର ଜନକଭାବେ ପରିଚିତ ହେଉଥିଲେ ମଧ୍ୟ ପଞ୍ଚମ ପୁତ୍ର ଥିଲେ ଜଗନ୍ନାଥ ମିଶ୍ର । ଜଗନ୍ନାଥ ମିଶ୍ରଙ୍କର ୮ଟି କନ୍ୟା ଅକାଳରେ ମୃତ୍ୟୁକୁ ନିମନ୍ତ୍ରଣ କରିଥିବାର ଜଣାଏ । ନବମ ସନ୍ତାନ ଥିଲେ ପୁତ୍ର ବିଶ୍ୱମ୍ଭର । ସେ ୧୬ ବର୍ଷ ବୟସରେ ସନ୍ନ୍ୟାସ ଦୀକ୍ଷା ଗ୍ରହଣ କରିଥିଲେ । ୧୦ମ ସନ୍ତାନ ଭାବେ ଶ୍ରୀ ଗୌରାଙ୍ଗଦେବ ଜନ୍ମଗ୍ରହଣ କରିଥିଲେ । ଅତି ସୁଖର କଥା ସତୀଦେବୀ ତା'ର ନାମ ରଖିଥିଲେ ନିମାଇଁ । ଶିଶୁ ନିମାଇଁ ଅତ୍ୟନ୍ତ ଗୌରବର୍ଣ୍ଣ ହୋଇଥିବାରୁ ନବଦ୍ୱୀପର ଲୋକମାନେ ଗୌରାଙ୍ଗ ଭାବେ ଡାକିବାକୁ ଲାଗିଲେ । କିନ୍ତୁ ସେ ସନ୍ନ୍ୟାସୀ ହେବା ପରେ ଭକ୍ତମାନେ ତାଙ୍କୁ ଚୈତନ୍ୟ ଓ ବିଶ୍ୱମ୍ଭର ଭାବେ ଡାକିବାକୁ ଲାଗିଲେ । ଗୁରୁ କେଶବ ଭାରତୀ ଶ୍ରୀକୃଷ୍ଣ ଚୈତନ୍ୟ ନାମରେ ନାମିତ କରି ବିଶ୍ୱ ଦରବାରରେ ପରିଚିତ କରାଇଲେ ।

ସାତବର୍ଷ ବୟସରେ ଶ୍ରୀଚୈତନ୍ୟଙ୍କ ବ୍ରତୋପୟନ ହୋଇଥିଲା ଓ ସେ ୧୩ମାସ ଗର୍ଭସ୍ଥ ଥିଲେ । ୧୬ ବର୍ଷ ବୟସରେ ଲକ୍ଷ୍ମୀପ୍ରିୟାଙ୍କ ସହ ବିବାହ ବନ୍ଧନରେ ବାନ୍ଧିହେଲେ । ଏହି ସୁଖଦିନ ସବୁ ରହି ନଥିଲା । ୨୪ ବର୍ଷ ବୟସରେ ସେ ଗୟାଠାରେ ଈଶ୍ୱରପୁରୀ ନାମକ ଜଣେ ସନ୍ନ୍ୟାସୀଙ୍କ ଦ୍ୱାରା ବୈଷ୍ଣବ ଧର୍ମରେ ଦୀକ୍ଷିତ ହେଲେ । ମାତ୍ର ୧୪ ବର୍ଷ ବୟସ ବେଳକୁ ସଂସ୍କୃତ, ସାହିତ୍ୟ, ତର୍କଶାସ୍ତ୍ର ଓ ବ୍ୟାକରଣ ସମ୍ବନ୍ଧରେ ସ୍ୱତନ୍ତ୍ର ଜ୍ଞାନର ଅଧିକାରୀ ହୋଇ ନିଗୂଢ଼ ରହସ୍ୟକୁ ବୁଝିପାରୁଥିଲେ, ବୁଝାଇ ମଧ୍ୟ ପାରୁଥିଲେ । ସେ ଦଶାକ୍ଷରୀ ଗୋପାଳ ମନ୍ତ୍ରରେ ଦୀକ୍ଷିତ ହୋଇ କୃଷ୍ଣ ନାମକୁ ପ୍ରଚାର କରିବାରେ ଲାଗିଲେ । ଗୃହତ୍ୟାଗୀ ହୋଇ ସେ ସନ୍ନ୍ୟାସୀ ଭାବେ ଦକ୍ଷିଣାତ୍ୟ, ପଶ୍ଚିମଭାରତ, ବୃନ୍ଦାବନ ଓ ମଥୁରା ଆଦି ସ୍ଥାନମାନଙ୍କରେ ଛଅବର୍ଷ ଅତିବାହିତ କରିଥିଲେ । ଶ୍ରୀଜଗନ୍ନାଥ ଧାମ ଥିଲା ଭାରତର ସର୍ବ ପ୍ରଧାନ ତୀର୍ଥସ୍ଥାନ । ବୈଷ୍ଣବ ଧର୍ମର ମୁଖ୍ୟ କେନ୍ଦ୍ରବିନ୍ଦୁ ଭାବେ ପୁରୀ ଭାରତରେ ପ୍ରସିଦ୍ଧଲାଭ କରିଥିଲା । ଏହି ସମୟରେ ଓଡ଼ିଶାର ଶାସକ ଥିଲେ ମହାରାଜ ପ୍ରତପ ରୁଦ୍ର ଦେବ ।

ଶ୍ରୀଚୈତନ୍ୟ ପ୍ରଥମେ ଯେଉଁଦିନ ଶ୍ରୀଜଗନ୍ନାଥଙ୍କର ଦର୍ଶନ କଲେ ସେଦିନ ସେ ଭାବବିହ୍ୱଳିତ ହୋଇ ମୂର୍ଚ୍ଛା ଚାଲି ଯାଇଥିଲେ । ପରେ ସାର୍ବଭୌମଙ୍କ ପରାମର୍ଶ କ୍ରମେ ଜଗନ୍ନାଥଙ୍କୁ ଗରୁଡ଼ସ୍ତମ୍ଭ ପାଖରେ ଦର୍ଶନକରି ଆନନ୍ଦଲାଭ କରିଥିଲେ । ଏପରି ଭାବେ ସେ ଭାବବିହ୍ୱଳ ହୋଇ ଯାଇଥିଲେ ଯେ ତାଙ୍କ ଆଙ୍ଗୁଳି ପଥରରେ ବାଜିବାରୁ ତାହା ଚିହ୍ନ ହୋଇ ଯାଉଥିଲା । ଏହି ଆଙ୍ଗୁଳିର ଚିହ୍ନ ଗରୁଡ଼ ସ୍ତମ୍ଭ ପାଖରେ ଦେଖିବାକୁ

ମିଳେ । ଥରେ ରଥଯାତ୍ରା ସମୟରେ ସେ ତାଙ୍କ ଭକ୍ତମାନଙ୍କୁ ୭ଦଳରେ ବିଭକ୍ତ କରି ଚାରିଦଳ ରଥ ଆଗରେ ଦୁଇ ଦଳ ପାର୍ଶ୍ୱରେ ଓ ଅନ୍ୟ ଦଳଟିରେ ଶ୍ରୀଚୈତନ୍ୟ ସାତ୍ତ୍ୱିକ ଭାବର ସହିତ ଢଳି ଢଳି ନାଚିନାଚି କୀର୍ତ୍ତନ କରି ଚାଲିଥାନ୍ତି । ରଥ ବଳଗଣ୍ଡିଠାରେ ଅଟକିଲା । ରଥରେ ଭୋଗ ହେବାର ଆୟୋଜନ ହେଲା- ଏହି ସମୟରେ ଶ୍ରୀଚୈତନ୍ୟ ଜଗନ୍ନାଥବଲ୍ଲଭ ମଠରେ ଟିକିଏ ବିଶ୍ରାମ ନେଲେ । ଭୋଗ ଶେଷପରେ ରଥ ହଠାତ୍ ବଳଗଣ୍ଡିଠାରେ ଥିବା ପଙ୍କରେ ପଡ଼ିଯିବାରୁ ରଥ ଆଉ ଉଠିଲା ନାହିଁ । ରାଜାଙ୍କ ନିର୍ଦ୍ଦେଶକ୍ରମେ ମହାବଳବନ୍ତ ଦନ୍ତା ହାତୀମାନେ ରଥକୁ ଟାଣିବାକୁ ଲାଗିଲେ କିନ୍ତୁ ରଥ ଅଗ୍ରସର ନହେବାରୁ ଶ୍ରୀଚୈତନ୍ୟ ଭକ୍ତଙ୍କ ହରିବୋଲ ହୁଳହୁଳି ନାଦରେ ଉନ୍ମଦ କୀର୍ତ୍ତନରେ ରତ ହୋଇ ନିଜର ମସ୍ତକ ଦ୍ୱାରା ରଥକୁ ପେଲିବାକୁ ଲାଗିଲେ । ଏହାଦ୍ୱାରା ରଥ ଘଡ଼ଘଡ଼ ନାଦ କରି ଆଗକୁ ଚାଲିଲା । ସେ ଦୀର୍ଘ ୬୦ର ବର୍ଷ କାଳ ଓଡ଼ିଶା ଭୂଇଁରେ ରହି ନିଜର ଅଲୌକିକ ଗୁଣର ପରାକଷ୍ଠା ଦେଖାଇବାସହ ନିଜର ମତକୁ ପ୍ରଚାର ଓ ପ୍ରସାର କରିବାରେ ଲାଗିଲେ ।

ତାଙ୍କର ମହାନ ବାଣୀ ଥିଲା ଭକ୍ତିର ସହିତ ଭଜନ ଓ ପ୍ରାର୍ଥନା ଦ୍ୱାରା ଈଶ୍ୱରଙ୍କ ସାନ୍ନିଧ୍ୟଲାଭ କରିହେବ । ଜୀବପ୍ରତି ଦୟା ଓ ଭଗବାନଙ୍କ ପ୍ରତି ଭକ୍ତି ଏହି ମହାନ୍ ଧର୍ମ ପ୍ରଚାର କରି ସେ ପଦବ୍ରଜରେ ଭ୍ରମଣ କରୁଥିଲେ । ସେ ଜାତିପ୍ରଥା ଓ ବ୍ରାହ୍ମଣ ପୁରୋହିତମାନଙ୍କ ପ୍ରଭାବକୁ ଅସ୍ୱୀକାର କରିବା ସହ ପୂଜା ପଦ୍ଧତି ଓ ଯଜ୍ଞ ଆଦି ଉପରେ ତାଙ୍କର ବିଶ୍ୱାସ ନଥିଲା । ଅସ୍ପୃଶ୍ୟ, ଚାଣ୍ଡାଳ, ପତିତ ନୀଚ ଓ ପାପୀ ସମସ୍ତଙ୍କୁ ସୁସ୍ନେହ ଦେଇ ସେ ସମସ୍ତଙ୍କ ଚିତ୍ତକୁ ହରଣ କରୁଥିଲେ । ଜାତିପ୍ରଥାକୁ ଘୋର ବିରୋଧ କରୁଥିଲେ । ସାର୍ବଜନୀନ ପ୍ରେମ ଓ ବିଶ୍ୱଭାତୃତ୍ୱ ଭାବକୁ ପ୍ରଚାର କରିବା ସହ ଅହଂକାର ଓ କ୍ରୋଧକୁ ପରିତ୍ୟାଗ କରିବା ପାଇଁ ଉପଦେଶ ଦେଉଥିଲେ । ତାଙ୍କ ନିକଟରେ ଧନୀ, ଦରିଦ୍ର, ଜାତି, ଅଜାତିର କୌଣସି ପାର୍ଥକ୍ୟ ନଥିଲା । ସମସ୍ତେ ଈଶ୍ୱରଙ୍କ ସନ୍ତାନ । ତାଙ୍କ ନାମ ସମସ୍ତେ ସ୍ମରଣ କରିବା ଉଚିତ ବୋଲି ସେ କହୁଥିଲେ ।

ଚୈତନ୍ୟଙ୍କ ମାର୍ଗ ଅତି ସହଜ ଓ ସରଳ ଥିବାରୁ ତାହା ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ସମସ୍ତଙ୍କୁ ଆକୃଷ୍ଟ କରିପାରିଥିଲା । ଅନେକ ତାଙ୍କୁ ବିଷ୍ଣୁ ଓ କୃଷ୍ଣଙ୍କ ଅବତାର ଭାବି ପୂଜା କରିବାକୁ ଲାଗିଲେ । ଧର୍ମର ମୂଳ ଭିତ୍ତି ଥିଲା ଈଶ୍ୱର ପ୍ରେମ ଓ ମାନବପ୍ରେମ ମୂଳକ । କେବଳ କୃଷ୍ଣ ଓ ହରିନାମ ଦ୍ୱାରା ଜୀବମୁକ୍ତି ପାଏ । ମନୁଷ୍ୟ ଜନ୍ମ ଦୁର୍ଲଭ ଜନ୍ମରୁ ମୁକ୍ତି ପାଇବା ପାଇଁ ସେ ଏହି ନାମରତ୍ନକୁ ପ୍ରଚାର କରିବାକୁ ଲାଗିଥିଲେ । ଚୈତନ୍ୟ ଦେହାନ୍ତ ପରେ ତାଙ୍କର ପ୍ରଧାନ ଶିଷ୍ୟ ନିତ୍ୟାନନ୍ଦ ଓ ଅଦ୍ୱୈତ, ଯଥାକ୍ରମେ ନବଦ୍ୱୀପ ଓ ପୁରୀରେ ଦୁଇଟି ଅନୁଷ୍ଠାନ ପ୍ରତିଷ୍ଠା କରି ଶ୍ରୀ ଚୈତନ୍ୟଙ୍କ

ଧର୍ମମତବାଦକୁ ପ୍ରଚାର ଓ ପ୍ରସାର କରିବାରେ ଲାଗି ପଡ଼ିଥିଲେ । ଓଡ଼ିଶା ଓ ବଙ୍ଗଳାରେ ଏହି ଧର୍ମ ବହୁଳ ଆଦୃତ ହେବା ସହ ଅନେକ ସଂକୀର୍ତ୍ତନ ଦଳ ଗଢ଼ିଉଠିଲା । ହରିନାମରେ ନିଜକୁ ନିମଜାଇ ଜୀବନକୁ ଧନ୍ୟ ମଣିବାକୁ ଲାଗିଲେ । ଅଚ୍ୟୁତାନନ୍ଦଙ୍କ ଶୂନ୍ୟସଂହିତାରେ ଚୈତନ୍ୟଙ୍କୁ ଶ୍ରୀକୃଷ୍ଣଙ୍କର ଅବତାର ଭାବରେ ଗ୍ରହଣ କରାଯାଇଛି । ହରିନାମ ମାଧ୍ୟମରେ ବିଶ୍ୱର ଶ୍ରେଷ୍ଠ ମାନବମାନଙ୍କୁ ଧରାଧାମରୁ ମୁକ୍ତି ଦେବକୁ ଶ୍ରୀକୃଷ୍ଣ, ଶ୍ରୀଚୈତନ୍ୟ ରୂପରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ସେବା ନିମନ୍ତେ ଓଡ଼ିଶାରେ ଜନ୍ମଗ୍ରହଣ କରିଥିବା ଜନ୍ମଜନ୍ମାନ୍ତର ସାଥି ପଞ୍ଚସଖା ମଧ୍ୟ ଜନ୍ମଗ୍ରହଣ କରି ତାଙ୍କସହ ଲୀଳାଖେଳାରେ ରତ ଥିଲେ ।

'ତୁମ୍ଭେ ପଞ୍ଚସଖାଙ୍କ ମୋ' ଜନ୍ମେ ଜନ୍ମେ ଆସ
ତୁମ୍ଭ ପାଇଁ ଅବତାର ଲୀଳା ଅଭିଷେକ ।

× × ×

ଶ୍ରୀଚୈତନ୍ୟ ଗୋସାଇଁ ଯେ ବ୍ରହ୍ମାଣ୍ଡର ପତି
ନିତ୍ୟାନନ୍ଦ ସଙ୍ଗେ ବେନି ଜନ୍ମ ହେଲେ କ୍ଷିତି ।'

ଚୈତନ୍ୟ ବଳରାମ ଦାସଙ୍କ ରାମତାରକ ମନ୍ତ୍ର, ଜଗନ୍ନାଥ ଦାସଙ୍କୁ ଷୋଳନାମ ବତିଶି ଅକ୍ଷର ମନ୍ତ୍ର । ଅଚ୍ୟୁତାନନ୍ଦଙ୍କୁ ଅଣାକ୍ଷର ମନ୍ତ୍ର, ଯଶୋବନ୍ତଙ୍କୁ ଶ୍ୟାମପଞ୍ଚାକ୍ଷର ମନ୍ତ୍ର ଓ ଶିଶୁ ଅନନ୍ତଙ୍କୁ ଏକାକ୍ଷର ମନ୍ତ୍ର ପ୍ରଦାନ କରିଥିଲେ । ପ୍ରତିଦିନ ସେ ଶ୍ରୀକ୍ଷେତ୍ରରେ ଶ୍ରୀଜୀଉଙ୍କ ନବାକ୍ଷରୀ ଛନ୍ଦରେ ଲିଖିତ ଭାଗବତ ପୁରାଣକୁ ଶ୍ରବଣ କରି ଅତୀବ ଭାବ ବିହ୍ୱଳରେ ଜଗନ୍ନାଥ ଦାସଙ୍କୁ ଆଲିଙ୍ଗନ କରିଥିଲେ । ସେ ତାଙ୍କୁ ଅତିବଡ଼ୀ ଭାବେ ସମ୍ବୋଧନ କରିବାକୁ ବଙ୍ଗୀୟ ଭକ୍ତଗଣ ଈର୍ଷାକାତର ହୋଇ ତାଙ୍କୁ ପରିତ୍ୟାଗ କରି ପୁରୁଷୋତ୍ତମ କ୍ଷେତ୍ର ଛାଡ଼ି ନଦିଆ ଅଭିମୁଖେ ପଳାୟନ କଲେ । କିନ୍ତୁ ବଙ୍ଗୀୟମାନେ ପଥରେ ଯିବା ସମୟରେ ଯାଜପୁରରେ କିଛିଦିନ ଅବସ୍ଥାନ କଲେ ଏହି ସମୟରେ ଶ୍ରୀଚୈତନ୍ୟ ହରିଦାସଙ୍କୁ ଯାଜପୁର ପଠାଇଲେ ବଙ୍ଗୀୟ ବୈଷ୍ଣବମାନଙ୍କୁ ଶ୍ରୀକ୍ଷେତ୍ରକୁ ଫେରାଇ ଆଣିବା ପାଇଁ । ସେମାନେ ନଫେରିବାରୁ ଚୈତନ୍ୟ ଓ ଜଗନ୍ନାଥ ଦାସ ଶେଷରେ ଯାଜପୁରରେ ପହଞ୍ଚିଲେ । ସେଠାରେ ଚୈତନ୍ୟ ଅତିବଡ଼ୀ ଜଗନ୍ନାଥ ଦାସ ବୋଲି ଡାକିବାରୁ ବଙ୍ଗୀୟ ବୈଷ୍ଣବଗଣ ଆଉ ଶ୍ରୀକ୍ଷେତ୍ରକୁ ଫେରିବେ ନାହିଁ ବୋଲି ପ୍ରକାଶ କଲେ । କିନ୍ତୁ ଚୈତନ୍ୟଙ୍କୁ ତ୍ୟାଗ କରିଥିବା ବଙ୍ଗୀୟ ବୈଷ୍ଣବ ଗୋଷ୍ଠୀ ତାଙ୍କୁ ଦର୍ଶନ ନ କରିବାରୁ ମାଧବ ଦାସଙ୍କ ହସ୍ତରେ ନିମନ୍ତ୍ରଣ ପଠାଇଲେ ତାଙ୍କ ନିକଟକୁ ଆସିବା ନିମନ୍ତେ । ଶ୍ରୀଚୈତନ୍ୟ ପ୍ରକାଶ କଲେ ନିଜର ଶେଷ ଜୀବନତକ ସେ ଶ୍ରୀକ୍ଷେତ୍ରରେ କଟାଇବେ, ଏଣୁ ତାଙ୍କର ଅନ୍ୟ ତୀର୍ଥ ଗମନ କରିବାକୁ ଶ୍ରଦ୍ଧା

ନଥିଲା । ସେ ତାଙ୍କର ଲୀଳା ଶେଷ କରି ନିତ୍ୟଧାମକୁ ଫେରିଯିବାକୁ ଇଚ୍ଛା କରନ୍ତେ ଜଗନ୍ନାଥଙ୍କ ଦିବ୍ୟଅଙ୍ଗରେ ଲୀନ ହୋଇଗଲେ ୧୫୩୩ ଖ୍ରୀ.ଅରେ ।

ବିଚାର କଲେ ହୃଦୟର
ଏକଳିକାଳ ବଳିୟାର ।
ଥିବାର ଉଚିତ ନୁହଁଇ ।
ନିଜ ଧାମୁ ଯିବି ମୁହିଁ ।
ଏମନ୍ତ ଭାବି ଶ୍ରୀଚୈତନ୍ୟ ।
ଶ୍ରୀ ଜଗନ୍ନାଥ ଅଙ୍ଗେ ଲୀନ
ଗୋପନ ହୋଇଲା ସ୍ୱଦେହେ
ଦେଖି କାହାର ଦୃଷ୍ଟି ନୋହେ ।

ବୈଷ୍ଣବ ଧର୍ମର ପ୍ରବର୍ତ୍ତକ ଶ୍ରୀଚୈତନ୍ୟଙ୍କ ଅନୁଗାମୀମାନେ ତାଙ୍କୁ ଈଶ୍ୱର ଭାବେ ପୂଜା କରିବାକୁ ଲାଗିଲେ । ରାସବିହାରୀ ମଠର ମୁଖ୍ୟ ଶ୍ରୀରାଧାଚରଣ ଦାସ ଦେବ ମହାରାଜ ୧୯୦୧ ମସିହାରେ ଯାଜପୁର ଅଞ୍ଚଳକୁ ଆସି ଉକ୍ତ ମହାମନ୍ତ୍ରଟିକୁ ପ୍ରତି ଜନପଦଠାରୁ ପ୍ରତି ପୁରେପୁରେ ଓ ପ୍ରତି ଲୋକମୁଖରେ ଗାଇବାର ଅମୃତ ବୀଜ ବୁଣିବାରେ ସକ୍ଷମ ହୋଇପାରିଥିଲେ ।

'ଭଜ ନିତାଇ ଗୌର ରାଧେଶ୍ୟାମ
ଜପ ହରେ କୃଷ୍ଣ ହରେ ରାମ ।'

ହରିନାମ ଅମୃତକୁ ପାନ କରୁଥିବା ଲୋକ ତା'ର ସ୍ୱାଦକୁ ଚାଖି ତୃପ୍ତି ଅନୁଭବ କରିବା ସଙ୍ଗେସଙ୍ଗେ ପ୍ରଭୁଙ୍କର ଦିବ୍ୟଅଙ୍ଗକୁ ଦର୍ଶନ କରି ମୋକ୍ଷପ୍ରାପ୍ତି ପାଇଁ ନିଜକୁ ଇଷ୍ଟଦେବଙ୍କ ନିକଟରେ ସମର୍ପଣ କରିଥାଏ ।

'ହରି ନାମେ କି ରସ ଅଛି, ପାନ କଲା ଲୋକ ସିନା ଜାଣିଛି ।'

ଶ୍ରୀ ଚୈତନ୍ୟଙ୍କ ଆଶୀର୍ବାଦ ପାଇବା ପାଇଁ ବୈଷ୍ଣବ ଭକ୍ତମାନେ ନିର୍ଦ୍ଦିଷ୍ଟ ସମୟ ପାଇଁ ସଂକଳ୍ପ କରି ଅଖଣ୍ଡ ନାମ ମହାମନ୍ତ୍ରକୁ ସଂକୀର୍ତ୍ତନ କରିବାକୁ ନାମଯଜ୍ଞ କୁହାଯାଏ । ଏଠାରେ ମଧ୍ୟ ଘୃତଦୀପ ଅଖଣ୍ଡ ଭାବରେ ଜଳୁଥିବାର ଦେଖାଯାଏ । ନାମଯଜ୍ଞର ଅନ୍ୟନାମ ଅଷ୍ଟପ୍ରହର ଭାବେ ଗ୍ରହଣ କରାଯାଏ । ଅଷ୍ଟପ୍ରହର ବ୍ୟତିରେକ ନବରାତ୍ର ନାମଯଜ୍ଞ ଚବିଶ ପ୍ରହର ଅହୋରାତ୍ର ଓ ଉଦୟାସ୍ତ ନାମଯଜ୍ଞ କରାଯାଏ ।

ନବରାତ୍ର ନାମଯଜ୍ଞ ବା ନାମ ସଂକୀର୍ତ୍ତନ ସବୁଠାରୁ ଦୀର୍ଘତମ କାର୍ଯ୍ୟକ୍ରମ ଅଟେ । ଏହା ଦିବାରାତ୍ର କରାଯାଇଥାଏ, ପ୍ରଥମ ଦିନରେ ଅଧିବାସ, ପରଦିନ

ସୂର୍ଯୋଦୟଠାରୁ ନବମ ଦିନଯାଏ ଅଖଣ୍ଡ ସଂକୀର୍ତ୍ତନ ଲାଗିରହେ ଓ ଶେଷ ଦିବସରେ ନଗର ସଂକୀର୍ତ୍ତନ କରି ସମାପ୍ତ କରାଯାଏ । ଚବିଶ ପ୍ରହର ନାମଯଜ୍ଞ ପାଞ୍ଚ ଦିନରେ ସମାପ୍ତ ହୁଏ । ପ୍ରଥମ ଦିନ ସଂଧ୍ୟାରେ ମାଙ୍ଗଳିକ କାର୍ଯ୍ୟକ୍ରମ ଅଧିବାସ, ତିନିଦିନ ଦିବାରାତ୍ରି ନାମ ସଂକୀର୍ତ୍ତନ ଓ ପୁନଃ କାର୍ଯ୍ୟକ୍ରମ ନଗର ପରିକ୍ରମା କରି ଶେଷ କରାଯାଏ । ଅହୋରାତ୍ର ନାମ ସଂକୀର୍ତ୍ତନକୁ ଅହୋରାତ୍ର ନାମଯଜ୍ଞ କୁହାଯାଏ । ଦିବସରେ ଅଧିବାସ କରାଯାଇ ସୂର୍ଯ୍ୟାସ୍ତ ପରେ ନାମକୀର୍ତ୍ତନ କରାଯାଇ ସାରାରାତ୍ର ନାମ କୀର୍ତ୍ତନରେ ମାତି ପ୍ରଭାତ ସୂର୍ଯ୍ୟୋଦୟ ହେଲେ ନାମର ପରିସମାପ୍ତି ଘଟେ ଓ ପରେ ନଗର ପରିକ୍ରମା କରାଯାଏ । ଉଦୟାସ୍ତ ବା ଅହୋରାତ୍ର ନାମକୀର୍ତ୍ତନ ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ନାମକୀର୍ତ୍ତନ ଲାଗି ରହିଥାଏ । ସୂର୍ଯ୍ୟାସ୍ତ ପରେ ନଗର କୀର୍ତ୍ତନ ବାହାରିଥାନ୍ତି ।

ନାମଯଜ୍ଞ ବା ସଂକୀର୍ତ୍ତନ ମଣ୍ଡପଟି ଚାରିକୋଣ ବିଶିଷ୍ଟ ହୋଇଥାଏ । କେନ୍ଦ୍ରବିନ୍ଦୁରେ ଏକ ତୁଳସୀ ଚଉଁରା ବୃକ୍ଷଥିବା ଚତୁଃପାର୍ଶ୍ୱରେ ଶ୍ରୀଗୌରାଙ୍ଗ, ନିତ୍ୟାନନ୍ଦ, ନାମାଚାର୍ଯ୍ୟ ଓ ରାଧାରମଣଙ୍କର ଫଟୋଚିତ୍ର ରହିଥାଏ । ଏଠାରେ ପଞ୍ଚତତ୍ତ୍ୱକୁ ଆବାହନ କରାଯାଏ । ଶ୍ରୀଗୌରାଙ୍ଗ, ଶ୍ରୀନିତ୍ୟାନନ୍ଦ, ଶ୍ରୀଅଦ୍ୱୈତ, ଶ୍ରୀଗଦାଧର, ଶ୍ରୀଦାସ ପଣ୍ଡିତ ଓ ରାଧାରମଣଙ୍କୁ ମଧ୍ୟ ସ୍ଥାନିତ କରାଯାଏ । ନୂତନ ପାଟ ଉପରେ ପାଚିଲା କଦଳୀ, ପଇଡା, ତମ୍ବାପଇସା, ପାନ, ଗୁଆ ଆଦି ରଖାଯାଇ ନୈବେଦ୍ୟ କରାଯାଏ । ବିଭିନ୍ନ ନାମଯଜ୍ଞ ପାଇଁ ଭିନ୍ନଭିନ୍ନ ପ୍ରକାରର ଘଟସ୍ଥାପନ କରାଯାଏ । ଶେଷାନ୍ତେ ଦଧିଭାଣ୍ଡ ଭାଙ୍ଗି ପରିସମାପ୍ତି ଘଟେ । ନାମରନ୍ ମନ୍ତ୍ରକୁ ସର୍ବଦା ଗାନ କରାଯାଏ, ଏହାକୁ ମଧ୍ୟ ପାଳିଧରି ଲୋକବାଦ୍ୟର ତାଳେତାଳେ ଉଚ୍ଚସ୍ୱରରେ ଗାଉଥିବାର ଜଣାଯାଏ । ବୈଷ୍ଣବମାନଙ୍କ ଉଦ୍ଦେଶ୍ୟରେ ନାମଯଜ୍ଞ ଶେଷକୁ ମାଲ୍‌ସା ଭୋଗ ସମର୍ପଣ କରାଯାଏ । ଏହାକୁ ଆନନ୍ଦରେ ସମସ୍ତେ ଗ୍ରହଣ କରି ସ୍ୱଗୃହକୁ ପ୍ରସ୍ଥାନ କରିଥାନ୍ତି ।

ଶ୍ରୀଚୈତନ୍ୟଙ୍କ ଅମୃତନାମ ମହାମନ୍ତ୍ରକୁ ଗାନ କରି ଓଡ଼ିଶାର ଅଧିବାସୀମାନେ ନିଜକୁ ଗୌରବାନ୍ୱିତ ମଣନ୍ତି । ଯେଉଁନାମ କଳି କଳୁଷ ନାଶନ, ପବିତ୍ର ଗଙ୍ଗାବାରି ତାକୁ ଗାଇ ମନୁଷ୍ୟ ଈଶ୍ୱର ପ୍ରାପ୍ତି ହେବାସହ ଆର୍ଯ୍ୟ ସଂସ୍କୃତିର ମହାନ୍ କଥାକୁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିଚାଲିଛି ।

କଳିକାଳେ ନାମ ରୂପେ କୃଷ୍ଣ ଅବତାର
ନାମ ଦୈତେ ହୟ ସର୍ବ ଜଗତ ନିସ୍ତାର ।'



# ସନ୍ଥକବି ଭୀମଭୋଇଙ୍କ ସାହିତ୍ୟରେ ନାରୀ ଚରିତ୍ର ଓ ପ୍ରତିମା ପୂଜାର ବିରୋଧ

ଭୀମଭୋଇ ବାରମ୍ବାର ଦେଶବାସୀଙ୍କୁ ନାନା ସୁ- ଉପଦେଶ ପ୍ରଦାନ କରିଛନ୍ତି । ଯାହା ପ୍ରାଣୀମାନଙ୍କର ମଂଗଳ ପାଇଁ ସଚରାଚର ବିଶ୍ୱର ମଂଗଳ ପାଇଁ ଅଭିପ୍ରେତ, ତାକୁ ହିଁ ଗ୍ରହଣ କରିବାକୁ ଭୀମଭୋଇ ପରାମର୍ଶ ଦେଇଛନ୍ତି । କବିଙ୍କ ଭାଷାରେ ଏହା ହିଁ ପରମସୁଖ । ଯୋଗୀ କେବେ ଭୋଗ ବାଞ୍ଛା ରଖେ ନାହିଁ । ଯାହା ଅହିତକର ତା' କଥା ଚିନ୍ତା ମଧ କରେ ନାହିଁ । ସଂସାରରେ ଯାହା ସାର ବା ଅମୃତ ତୁଲ୍ୟ ତାକୁ ସେ ଗ୍ରହଣ କରିଥାଏ । କବି ଗାଇଛନ୍ତି-

ସାର ଅସାର ସମାନରେ କରିଛି
କାହାକୁ ତେଜିବି ଦେଖ ।
ସଦ୍‌ବୁଦ୍ଧି ଜ୍ଞାନ ହୃଦରେ ବିଚାର
ମନରେ କର ବିବେକ ।
ଯୋଗ ଭୋଗ ଦୁହେଁ ସମାନ
ଅଟନ୍ତି କାହାର ପକ୍ଷରେ ଯିବ ।
ବିଷ ଅମୃତ ବେନି ଭାଗ କରିଛି
କେବଣ ଭାଗକୁ ନେବ ।

ନିଜକୁ ସତ୍‌ମାର୍ଗୀ କରିବା ପାଇଁ କେତେକ ଆନୁସଂଗୀକ କର୍ମମାନ କରିବା ପାଇଁ ଉଲ୍ଲେଖ କରାଯାଇଛି । ଯାହା ସାତ୍ତ୍ୱିକ ସ୍ନାନସାତ୍ତ୍ୱିକ, ଭୋଜନ, କର୍ମ ଉପରେ ଗୁରୁତ୍ୱ ଦେବା, ସାତ୍ତ୍ୱିକ ଚିନ୍ତା କରିବା, ସତ୍ୟ କହିବା, ସତ୍ୟ ଗବନ କରିବା, ହୃଦୟ ଓ ମନକୁ ନିର୍ମଳ ତଥା ପବିତ୍ର ରଖିବା ଇତ୍ୟାଦି ।

ସତ୍ୟରେ କହିବ ସତ୍ୟେ ରହିଥିବ
ସତ୍ୟରେ ଯିବ ଆସିବ ।
ସତ୍ୟ କର୍ମରେ ଯେତେ କୀରତିମାନ
ଯୁଗେ ଯୁଗେ ରହିଥିବ ।

ହୃଦୟ ନିର୍ମଳ ମନ ହିଁ ନିର୍ମଳ
ହୋଇଥିବ ସଦାକାଳ ।
ଅନ୍ତର୍ଗତରେ କପଟ ନ ରଖିଲେ
ସେ ଅଟଇ ଗଂଗାଜଳ ।

ସ୍ତୁତି ଚିନ୍ତାମଣି ଗ୍ରନ୍ଥରେ ଜଗତବାସୀଙ୍କୁ ସତ୍‌ମାର୍ଗରେ ଯିବା ପାଇଁ ନାନା ଉପଦେଶ ଦେଇଛନ୍ତି । କାମ, କ୍ରୋଧ, ଲୋଭ, ମୋହ, ହିଂସା, କାପଟ୍ୟ, ଛନ୍ଦ୍ର, ବାଦ, ଈର୍ଷା, ରାଗ, ଅହଂକାର, ଖଚ, ମିଛ, ଚୋରି, ପରଦାର ହରଣ, ଅସନ୍ତୋଷ, ଅତୃପ୍ତି, ଅନ୍ୟକୁ ଆଘାତ ଦେବା ଇତ୍ୟାଦିକୁ ପରିହାର କରିବା ପାଇଁ ଆହ୍ୱାନ ଦେଇଛନ୍ତି । ମନୁଷ୍ୟ ଜନ୍ମ ସମୟରେ ଏକା ଧରାଧାମକୁ ଆସିଛନ୍ତି ଓ ମୃତ୍ୟୁବେଳେ ମଧ୍ୟେ ଏକା ଯିବ । କେହି କାହାରି ସାଂଗରେ ଯିବେ ନାହିଁ ।

ମରିଗଲେ କେହି କିଛି ନନେବାକୁ
ଅରଜି ଅଛନ୍ତି ଯେତେ ।
କେତେବେଳେ ଆଉ କେହି ନ ଗାଛନ୍ତି
ଯାଉଛନ୍ତି ତୁଚ୍ଛା ହସ୍ତେ ।
ଆସିଅଛି ଏକା ଯାଉଅଛି ଏକା
କେହି ନୁହନ୍ତି କାହାର ।
ବାମ ଡାହାଣରେ କେହି ନ ଲମ୍ଭନ୍ତି
ଘଟୁ ହୋଇଲେ ବାହାର ।

ପୂର୍ବ ଜନ୍ମରୁ ସୁକୃତ ନଥିଲେ ପାରିବାରିକ ସଂପ୍ରୀତି ବଢ଼େ ନାହିଁ । ନରରୂପୀ ନାରାୟଣଙ୍କ ପ୍ରତି ଶ୍ରଦ୍ଧା ସ୍ନେହ, ମମତା ନଥିଲେ ସେ ବ୍ୟକ୍ତି ପଶୁ ସହ ସମାନ । ଜୀବ ପ୍ରତି ଯାର ଦୟାଭାବ ନଥାଏ ସେ ବ୍ୟକ୍ତି କୁମ୍ଭୀପାକ ନର୍କ ଭୋଗ କରେ ।

ଧନ ଦାରା ସୁତ ଇଷ୍ଟ ବନ୍ଧୁ ଜାତି
ଶରଧା ନଥାଇ ଯେବେ,
ମିତ୍ର ବନ୍ଧୁ ପ୍ରୀତି କିପରି ବଢ଼ିବ
ସୁକୃତ ନଥିଲେ ପୂର୍ବେ ।

ମନୁଷ୍ୟ ମନରେ ଯଦି ଦୟା ଭାବ ନଥାଏ ସେ ବ୍ୟକ୍ତି ଅଜ୍ଞାନ ଆଲୋକର ସନ୍ଧାନ ପାଇପାରେ ନାହିଁ । ବିଭୁ କୃପାରୁ ବଂଚିତ ହେବା ସଂଗେସଂଗେ ନୀଚ ଯୋନିରେ ଜାତ ହୁଏ । ସମଗ୍ର ସୃଷ୍ଟିରେ ସମସ୍ତେ ସମାନ । ସେ ଗୁରୁ ହେଉ ଅଥବା ଶିଷ୍ୟ, ଭକ୍ତ ହେଉ ଅବା ଭଗବାନ, ପୁରୁଷ ହେଉ ଅବା ନାରୀ, ମୂର୍ଖ ହେଉ ଅଥବା ପଣ୍ଡିତ,

ସମସ୍ତଙ୍କ ଘଟରେ ସମାନ ଭାବରେ ପରଂବ୍ରହ୍ମ ଅବସ୍ଥାନ କରିଅଛନ୍ତି ।

ସୁବୁଦ୍ଧି ସତ୍ୟରେ ଅର୍ଥ ସଂପଦରେ
ଚିତ୍ତେ ଯାର ଶ୍ରଦ୍ଧା ନାହିଁ,
ପାଂଚ ପଚିଶରେ ବାହ୍ୟ ଜଗତରେ
ଜ୍ଞାନହୀନ ବୋଲି କହି ।

ଭୀମଭୋଇଙ୍କ ସାହିତ୍ୟରେ ନାରୀ ଜାତିକୁ ଯଥେଷ୍ଟ ସମ୍ମାନ ଦିଆଯାଇଛି । ଜନନୀ, ଭଗିନୀ, ଜାୟା ଭାବରେ କେବଳ ନୁହେଁ, ସ୍ନେହ, ପ୍ରେମ, ତ୍ୟାଗ, ଶକ୍ତିର ପ୍ରତୀକ ହେଉଛି ନାରୀ । ସଂସାର ପାଇଁ ନାରୀର ଭୂମିକା ଅଗ୍ରଗଣ୍ୟ ।

ପୁରୁଷ ସ୍ତରୀରନ୍ ନଥିଲେ
ଗୃହ ଥିବାର କି ସୁଖ ।
ସଂସାର ସାଗରେ ପୁତ୍ର ଦୁହିତାରେ
ଯେବଣ ପ୍ରାଣୀ ନିରେଖ ।
କୁଳଧର୍ମ ନାଶ କର୍ମ ଅପଯଶ
ଚାହିଁ ନ ଯୋଗାଏ ସୁଖ ।

ନାରୀର ସତୀତ୍ୱ ତା'ର ସର୍ବଶ୍ରେଷ୍ଠ ସଂପଦ । ତେଣୁ ମହିମା ଭଜନ ଗାନ କରିବା ସହିତ ପରପୁରୁଷ ପ୍ରତି ଆସକ୍ତ ନହେବାକୁ କବି ସ୍ତୁତି ଚିନ୍ତାମଣି ଗନ୍ଥରେ ଉପଦେଶ ଦେଇଛନ୍ତି ।

ସ୍ତରୀମାନେ ଯେବେ ମହିମାକୁ
ଭଜି ପତି କି କହିବେ ସତ୍ୟ ।
ସ୍ତିରୀ ସାଧ୍ୱୀ ସୁଲକ୍ଷଣ ହୋଇବ
ମୁକ୍ତି ହେବ ପରାହତ ।
ପତି ଛାମୁରେ ଅନ୍ତର ନ ରଖିବ
ଆପଣା ବିଷୟ ଯେତେ ।
ସ୍ତିରୀ ପିଣ୍ଡ ପ୍ରାଣ ଧନ ଅଟଇ ସେ
ଠାକୁର ପରା ସାକ୍ଷାତେ ।

ନାରୀମାନଙ୍କୁ ସମ୍ମାନ ଦିଆଯାଇଥିଲେ ମଧ ନାରୀ ସ୍ୱାଧୀନତା ନାମରେ ସ୍ୱେଚ୍ଛାଚାରିତାକୁ ପ୍ରଶୟ ଦିଆଯାଇ ନାହିଁ । ସ୍ୱାମୀ ଈଶ୍ୱରଙ୍କ ପରି, ତାଙ୍କୁ ସନ୍ତୁଷ୍ଟ କରିବା ପାଇଁ ନାରୀ ନିଜକୁ ଉତ୍ସର୍ଗ କରିବା ଉଚିତ୍ ବୋଲି ଭୀମଭୋଇ ପ୍ରକାଶ କରିଛନ୍ତି । ସ୍ୱାମୀର ହିତ ପାଇଁ ନାରୀ ।

ସ୍ତିରୀ ଯେ ଅଟେ ପତିର ହିତରେ
ଦିବା ନିଶି ଚାହିଁ ଥାଇ ।
ପତି କୋଳେ ଘେନି ଭୋଗ ବିଳାସଇ
ଚଉବର୍ଗ ଫଳ ପାଇ ।

ମାତ୍ର ଦର୍ଶନ ତତ୍ତ୍ୱ ଦୃଷ୍ଟିରୁ ନାରୀ ଓ ପୁରୁଷ ସମାନ । ପରସ୍ପର ପରିପୂରକ ଓ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । କାରଣ- ନାରୀ ଓ ପୁରୁଷ ଉଭୟଠାରେ ସେଇ ଅନିର୍ବଚନୀୟ ପରମ ସତ୍ତା ବିଦ୍ୟମାନ ।

ଗୁରୁ ଦୁଆରକୁ ସର୍ବେ ଅଟନ୍ତି ସମାନ ।
ସ୍ତିରୀ ପୁରୁଷ ତହିଁ ନାହିଁ ବଡ଼ ସାନ ।
ଯେଉଁ ବ୍ରହ୍ମେ ବେନି ଜନ ହୋଇଛନ୍ତି ଜାତ ।
କାୟା ବର୍ଣ୍ଣଭେଦ ସିନା କହିଲା କଥାତ ।
ସ୍ତିରୀ ପୁରୁଷ ଯେ ଏହି ରଂଚନର ମୂଳ ।
ଯୁଗଳ ପାଣ୍ଟାତେ ସିନା ସବୁ ହେଲା ଠୁଳ ।

ନିର୍ବେଦ ସାଧନ ଗ୍ରନ୍ଥରେ କବି ପ୍ରକାଶ କରିଛନ୍ତି ସ୍ତ୍ରୀ ଓ ପୁରୁଷ ଏକ ଓ ଅଭିନ୍ନ । ପତ୍ନୀ ପତିବ୍ରତା ହେବା ସଂଗେସଂଗେ ବନ୍ଧୁ ବାନ୍ଧବ, ଆତ୍ମୀୟ ସ୍ୱଜନଙ୍କ ପାଇଁ ସେବା, ତ୍ୟାଗ ଓ ଭକ୍ତି ମନୋଭାବପୋଷଣ କରିବା ଉଚିତ୍ । କବିଙ୍କ ପ୍ରଣୀତ ଶ୍ରୁତି ନିଷେଧ ଗୀତାରେ ମଧ୍ୟ ପୁରୁଷଙ୍କୁ ବ୍ରହ୍ମଙ୍କ ସହିତ ତୁଳନା କରାଯାଇ ନାରୀଙ୍କୁ ଭକ୍ତିଭାବର ପ୍ରତୀକ ଭାବେ ଗ୍ରହଣ କରିଛନ୍ତି ।

ସେ ସ୍ତିରୀ ବ୍ରହ୍ମଙ୍କୁ ସେବଇ,
ଭକ୍ତି ଭାବେ ମୋତେ ପାଇ ।
ପୁରୁଷ ପାଦେ କରି ସେବା,
ମାତାପଣରେ ପାଏ ଶୋଭା

ଜ୍ଞାନାଶ୍ରୟୀ ଓଡ଼ିଆ ସନ୍ଥ ସାଧକମାନେ ମୁଖ୍ୟତଃ ନିର୍ଗୁଣ ବ୍ରହ୍ମଙ୍କ ଉପାସକ । ସେମାନେ ମୂର୍ତ୍ତି ପୂଜାକୁ ଗୁରୁତ୍ୱ ଦିଅନ୍ତି ନାହିଁ । ସନ୍ଥ ମତରେ ପିଣ୍ଡ ମଧ୍ୟରେ ସମସ୍ତେ ଦେବଦେବୀ, ତୀର୍ଥସ୍ଥାନ, ସ୍ୱର୍ଗ-ମର୍ତ୍ତ୍ୟ-ପାତାଳ ଅବସ୍ଥିତ । ରୂପର ଆରାଧନାକୁ କଦାପି ରୂପ ମଧ୍ୟରେ ସୀମାବଦ୍ଧ କରି ରଖାଯାଇ ପାରିବ ନାହିଁ । ଯେଉଁ ଉପାସନା ରୂପର ସୋପାନ ଗୁଡ଼ିକରେ ହିଁ ଗୁଡ଼ାଇ ତୁଡ଼ାଇ ହୋଇ ରହିଥାନ୍ତି ତାହାକୁ କେବଳ ମାତ୍ର ଏକ ଦ୍ରବ୍ୟାତ୍ମବୋଧୀ ପୌତ୍ତଳିକତା ବୋଲି କୁହାଯାଏ । ଓଡ଼ିଆ ଜ୍ଞାନାଶ୍ରୟୀ ସାଧକମାନଙ୍କ ପାଇଁ ପରମ୍ପରାରେ କବି ଭୀମଭୋଇ ଏହି ତତ୍ତ୍ୱକୁ ଅଧିକ ସକ୍ରିୟ ଭାବେ ବର୍ଣ୍ଣନା କରିଛନ୍ତି ।

କବିଙ୍କ ଶ୍ରୁତି ନିଷେଧ ଗୀତାରେ ଉଲ୍ଲେଖ ଅଛି-

ଚିତ୍ରପଟକୁ ନେତ୍ରେ ଦେଖି ।
ମନ ଆନନ୍ଦେ ହୋଇ ସୁଖୀ ।
ଏ ଘଟେ ଜଗନ୍ନାଥ ଅଛି ।
ମିଛରେ ପ୍ରତିମା ପୂଜୁଛି ।
ମୂର୍ତ୍ତି ପ୍ରତିମା ଶୁଷ୍କ କାଠ ।
ସେ ପୁଣି ନେବ କି ବୈକୁଣ୍ଠ ।
ମିଥ୍ୟାରେ ଭୁଲି ମରେ ପ୍ରାଣୀ ।
ଘଟ ପ୍ରତିମାକୁ ନ ଚିହ୍ନି ।

କବିଙ୍କ ସ୍ତୁତି ଚିନ୍ତାମଣି ଗ୍ରନ୍ଥରେ ବହୁ ସ୍ଥାନରେ ଏ ସଂପର୍କରେ ଉଲ୍ଲେଖ ଅଛି ।

ଅରୂପ ସେ ବ୍ରହ୍ମ ସେ ରୂପ ନ ଦିଶଇ, ନାହିଁ ତା'ର ହୋଇ ଛାଇ ।

ବ୍ରହ୍ମଙ୍କ ସ୍ୱରୂପ ସଂପର୍କରେ ଲେଖିଛନ୍ତି-

ବିଜେ ମହିମା ଏ ମହି ମଣ୍ଡଳେ
ରୂପରେଖ ନାହିଁ ତାକୁ ଦେଖ ଚର୍ମ ଡୋଳେ ।

ଭଜନଗୁଡ଼ିକରେ ଅନୁରୂପ ଦୃଷ୍ଟାନ୍ତ ଭୀମଭୋଇ ପ୍ରଦାନ କରିଛନ୍ତି ।

ରୂପରେଖ ବର୍ଣ୍ଣ ନାହିଁ ଯାହାରି
ମନ ନପଶେ ଅମନ ବିହାରୀ ।
ନୁହନ୍ତି ଦୃଶ୍ୟ ଅନାରୀତ ପୁରୁଷ
ଜଗତ ଭଗତ କେହି ନପାନ୍ତି ଲେଶ ।
ମହାଶୂନ୍ୟ ଶୂନ୍ୟ ଦେହୀ ରୂପରେଖ
ବର୍ଣ୍ଣ ନାହିଁ ନିଗମେ ପଶ ।
ଶୂନ୍ୟ ମନ୍ଦିରେ ବିହାର
ରୂପରେଖ ନାହିଁ ଯାର ।

ସନ୍ଥ ସାଧକମାନେ ଜାତି ବର୍ଣ୍ଣ ଧର୍ମ ନିର୍ବିଶେଷରେ ସମସ୍ତେ ମାନବ ସମାଜକୁ ଆପଣାର କରିଥିଲେ । ଏହି ସନ୍ଥମାନେ ଥିଲେ, ଭିନ୍ନ ଭିନ୍ନ ସଂପ୍ରଦାୟର । ଅଧିକନ୍ତୁ ଏମାନେ ଥିଲେ ନିମ୍ନ ବର୍ଗର । କବୀର, ନାମଦେବ, ଦାଦୁ, ରଇଦାସ, ହାଡ଼ିପାଙ୍କୁ ଏ ଦୃଷ୍ଟିରୁ ବିଚାର କଲେ ସନ୍ଥ ସାଧକମାନେ ନିଜକୁ ଦାସ, ଶୁଦ୍ର, ମୂର୍ଖ, ଅପଣ୍ଡିତ, ଅଜ୍ଞାନ ବୋଲି ବାରମ୍ବାର ସେମାନଙ୍କ ରଚନାବଳୀରେ ଉଲ୍ଲେଖ କରିଛନ୍ତି ।

ଭୀମଭୋଇଙ୍କ ଧର୍ମ ଓ ସାହିତ୍ୟରେ ଏହି ପ୍ରସଙ୍ଗ ଅତ୍ୟନ୍ତ ସ୍ପଷ୍ଟ ହୋଇଅଛି । ହିନ୍ଦୁ ଧର୍ମର ନାନା କୁସଂସ୍କାରକୁ ଭୀମଭୋଇ ଗ୍ରହଣ କରନ୍ତି ନାହିଁ ।

ସ୍ତୁତି ଚିନ୍ତାମଣି ଏହି ଜାତିପ୍ରଥା ବିରୁଦ୍ଧରେ ସେ କଠୋର ପ୍ରତିବାଦ ଜଣାଇଛନ୍ତି ।

ଛତିଶ କୁଳ ବାଉନ ଯେ ପାଟକ
ଜାତି ବୋଲା ନାହିଁ ଯାଏ ।
ପାଣି ଅନ୍ତର ପାଟକ ସିନା ହୁଏ
ସୁପଣ୍ଡିତେ କର ନ୍ୟାୟେ ।
ତିନି ବ୍ରହ୍ମାଣ୍ଡରେ ଲୋଡି ଆସ
ତୁଣ୍ଡେ ଏକ ଜଣ ଏକ ଜାତି ।
ସେହି ସଭିଙ୍କୁ ଶତ ଜାଣି କରିଛି
ତାହାର ରଞ୍ଜିଲା ପୃଥ୍ୱୀ ।

ଅନ୍ୟତ୍ର ସେ ପୁଣି କହିଛନ୍ତି-

କି ଅବା ବ୍ରାହ୍ମଣ କି ଅବା ଚାଣ୍ଡାଳ
ଅନ୍ୟ ନ କରିବ ଚିତ୍ତେ ।
ଜାତି ଗୋତ୍ର ହିଁ ନ ପଚାରିବେ କିଛି
ହାନି ଲାଭ ତା'ର ଯେତେ ।

ଭାରତୀୟ ସଂସ୍କୃତି ମଣିଷକୁ ଅମୃତର ସନ୍ତାନ ଭାବେ ଆବହମାନ କାଳରୁ ଗ୍ରହଣ କରି ଆସିଛି । ସକଳ କ୍ଷୁଦ୍ରଣଠାରୁ ଦୂରେଇ ଯାଇ ସମଗ୍ର ବିଶ୍ୱକୁ ଗୋଟିଏ ପରିବାର ବୋଲି ଭାବିନେବା ସହିତ ସମସ୍ତଙ୍କ ସୁଖ ସୌଭାଗ୍ୟ- ପ୍ରେମ- ଶାନ୍ତି ପ୍ରାପ୍ତ ପାଇଁ ନିଜକୁ ଉତ୍ସର୍ଗ କରିବାର ମନୋବୃତ୍ତି ମଧ୍ୟ ଶିଖାଇ ଆସିଛି ।

ସ୍ଥାବରୁ ଜଂଗମ କୀଟରୁ ପତଂଗ
ଚାହିଁଦେଲେ ଅନୁସରି
ସକଳ ଘଟରେ ପୂରି ସମାନରେ
ମୋହେ ସାନ ବଡ଼ କରି ।

ଆତ୍ମବତ୍ ସର୍ବ ଭୂତେଷୁ ମହାମନ୍ତ୍ର ଭାରତୀୟ ସଂସ୍କୃତିର ବୀଜମନ୍ତ୍ର । ସବୁ ଧର୍ମ ଭିତରେ ଏହି ତତ୍ତ୍ୱ ନିହିତ ଥିଲେ ମଧ୍ୟ କବି ଭୀମଭୋଇ ସ୍ତୁତି ଚିନ୍ତାମଣିରେ ଉଲ୍ଲେଖ କରିଛନ୍ତି ।

ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁ ଦେଖୁ କେବା ସହୁ ।
ମୋ' ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ ।

ଜଗତ ଜନଙ୍କ ଆର୍ତ୍ତନାଦ ଭୀମଭୋଇଙ୍କୁ ବ୍ୟଥିତ କରିଛି । ପତିତ ଅରକ୍ଷିତ- ନିଃସ୍ୱ- ଦୁଃଖୀ- ଦୀନ ଦରିଦ୍ରମାନଙ୍କୁ ଦୟା କରିବା ପାଇଁ ତାଙ୍କ ଇଷ୍ଟଦେବତାଙ୍କୁ ପ୍ରାର୍ଥନା କରିବା ସଂଗେସଂଗେ ସ୍ତୁତି ଚିନ୍ତାମଣି ଗ୍ରନ୍ଥରେ ପ୍ରକାଶ କରିଛନ୍ତି-

କୋଟି କୋଟି ସ୍ତୁତି କୋଟି ପ୍ରଣିପତ୍ୟ
ଗଳାରେ ବସନ ବାନ୍ଧି,
ଦନ୍ତରେ ତିରଣ ବିନୟ ଭାବେଣ
ଜଣାଣ କରୁଛି କାନ୍ଦି ।
ଅଯୋନି ଅଜାତ ଅବୟ ଅଚ୍ୟୁତ
ଅଣାକାର ଏକ ବ୍ରହ୍ମ,
ମହିମା ସାଗର ବାନା ପ୍ରକାଶିଛ
ଆଦି ଅବଧୂତ ଧର୍ମ ।
ମେଳଛ ପତିତ ପାମର ଅଜ୍ଞାନ
କୀଟ ପ୍ରାଏକୁ ତା' ଜୀବ,
ଅନାସ୍ଥ ପ୍ରାଣୀଙ୍କ ଅନ୍ତର୍ଗତେ ଜାଣି
ସୁଦୟାରେ ଚାହିଁଥିବ ।
ନିରେଖ ଜୀବକୁ ନିରାଶ ନକରି
ନିଷ୍କାମରେ ଫଳ ଦେବ,
ବିଶାଖା ପ୍ରାଣୀଙ୍କ ଶୂନ୍ୟ ନାମ ବ୍ରହ୍ମ
କୃପାଜଳେ ତରିନେବ ।

ହିନ୍ଦୁ ଧର୍ମାବଲମ୍ବୀମାନେ ଅତି କଠୋର ଭାବେ ଜାତିପ୍ରଥାକୁ ସମ୍ମାନ ଦିଅନ୍ତି । ଶୂଦ୍ର, ଅଛବ, ନୀଚ ଜାତିର ଲୋକମାନଙ୍କୁ ସେମାନେ ମନ୍ଦିର ମଧ୍ୟକୁ ପ୍ରବେଶ କରାଇ ଦିଅନ୍ତି ନାହିଁ । କିନ୍ତୁ ଭୀମଭୋଇ ଏହାକୁ କଠୋର ଭାବେ ବିରୋଧ କରନ୍ତି ।

ଜାତି ଖୋଜିଲେ ମୁକ୍ତି ନାହିଁ ।
ମୁକ୍ତି ଖୋଜିଲେ ଜାତି ନାହିଁ ।



# ଇଷ୍ଟଦେବୀ ତୁଳସୀ

ଧ୍ୟାୟେ ଦେବୀଂ ନବଶଶୀ ମୁଖଂ ପକ୍ୱ ବିମ୍ବାଧରରୋଷ୍ଠୀ ।
ବିଦ୍ୟାତନ୍ତ୍ରୀଂ କୁଚଯୁଗଳ ନମ୍ରକଂ ପାକଂ ଯଷ୍ଟିଂ
ଇଷଦ୍ଧାସା ଲଳିତ ବଦନାଂ ଚନ୍ଦ୍ର ସୂର୍ଯ୍ୟାଗ୍ନି ନେତ୍ରାଂ
ଶ୍ୱେତାସିଂ ବର ପ୍ରଦାୟିନୀ ଶ୍ୱେତ ପଦ୍ମାସନସ୍ଥା ॥

ହିନ୍ଦୁ ଧର୍ମଧାରାରେ ମାତା ତୁଳସୀଦେବୀଙ୍କୁ ଇଷ୍ଟଦେବୀ ଭାବରେ ପୂଜା କରାଯାଏ । ସେ ଗୃହର ରକ୍ଷକ । ତୁଳସୀ ବୃକ୍ଷ ମୂଳରେ ପ୍ରଥମ ସାଧନାର ମୂଳ ବୀଜ ପକାଯାଏ । ତୁଳସୀ ବୃକ୍ଷ ମୂଳରେ ବସି ଧ୍ୟାନ ପ୍ରାର୍ଥନା କଲେ ସର୍ବ ପ୍ରକାର ମଂଗଳ ହୋଇଥାଏ ଓ ଚତୁର୍ବର୍ଗ ଫଳ ମିଳିଥାଇ ବୋଲି ବିଶ୍ୱାସ କରାଯାଏ । ଧର୍ମ, ଅର୍ଥ, କାମ୍ୟ ଓ ମୋକ୍ଷ । ଏଣୁ ତୁଳସୀ ହେଉଛନ୍ତି ପୂର୍ଣ୍ଣବାସୀ । ସେ ସମସ୍ତ ଅଭିଳାଷପୂର୍ଣ୍ଣ କରନ୍ତି । ତୁଳସୀଙ୍କୁ ଭଗବାନ ବିଷ୍ଣୁଙ୍କ ସହିତ ତୁଳନା କରାଯାଇଥାଏ । ତୁଳସୀକୁ ଭଗବାନ ଧାରଣା କରୁଥିବାରୁ ତୁଳସୀର ଗୁଣ ଅସୀମ ଓ ପରିବ୍ୟାପକ । ତୁଳସୀ ବିନା ନାରାୟଣଙ୍କ ନୈବିଦ୍ୟ ହୋଇପାରେ ନାହିଁ । ଏଣୁ ତୁଳସୀ ସର୍ବବନ୍ଦନୀୟା ।

ଅର୍ଚ୍ଚେୟ ତୁଳସୀଂ ଦେବୀଂ ଶ୍ୟାମା କମଳ ଲୋଚନା ।
ପ୍ରସନ୍ନାଂ ପଦ୍ମ କଲ୍ହାର ବର ଦାୟିନୀ ଚତୁର୍ଭୁଜାଂ ।
କିରଟ ହାରଂ କେୟୂରଃ କୁଣ୍ଡଳାଦି ବିଭୂଷିତଂ ।
ଧବଳା କ୍ଙ ସଂଯୁକ୍ତା ପ୍ରଦ୍ମାସନଂ ନିପେବୃଶ୍ୟଂ ।

ତୁଳସୀ ଏକ ଛୋଟ ଗଛ ହେଲେ ମଧ୍ୟ ଏହା ଏକ ପବିତ୍ର ବୃକ୍ଷ ଅଟେ । ଏହାର ସର୍ବାଂଗ ସର୍ବ ଗୁଣସଂପୂର୍ଣ୍ଣ । ଏହାର ପତ୍ର ଦ୍ୱାରା ଦେବଦେବୀଙ୍କର ପୂଜାର୍ଚ୍ଚନା କରାଯାଏ । ଡାଳ ବା ଅସ୍ତିରେ ମାଳା ପ୍ରସ୍ତୁତ କରି ଧାରଣା କରାଯାଏ ଓ ତପ ଜପ ମଧ୍ୟ କରିହୁଏ । ବିଶିଷ୍ଟ ଶିବ ପୂଜାରେ ତୁଳସୀ ମଂଜରୀ ମଧ୍ୟ ବ୍ୟବହୃତ ହୁଏ । ତୁଳସୀ ପତ୍ରରେ ଭଗବାନ ଶ୍ରୀବିଷ୍ଣୁ ତୃପ୍ତି ହୁଅନ୍ତି । ତୁଳସୀ ଚୟନ କରିବାକୁ ହେଲେ ପୁରାଣମାନଙ୍କରେ ବର୍ଣ୍ଣିତ ଅଛି 'ଓଁ ଶ୍ରୀଂ ହ୍ରୀଁ ବନଦେବୈ ବିଷ୍ଣୁ ନିମନ୍ତେ ତୁଳସୀ ତୋଳନ୍ତେ, ମମଃ ଦୋଷ ନ ବିଦ୍ୟତେ ।

ତୁଳସୀ ପତ୍ରକୁ ସ୍ନାନ ସାରି ତୋଳାଯାଏ । ତୋଳାଯିବା ସମୟରେ ତିନିତାଳି ମାରି ମନ୍ତ୍ର ପଢ଼ି, ତର୍ଜନି ଅଙ୍ଗୁଷ୍ଟ ନଲଗାଇ ତୋଳାଯାଏ । ଧୀର ସ୍ଥିର ଚିତ୍ତରେ ଧୂପ,

ଦୀପ ପ୍ରଦାନ କରି ଅଭିମନ୍ତ୍ରିତ କରି ତୁଳସୀ ପତ୍ର ଗଛ ନହଲାଇ ତୋଳିଲେ ଭଗବାନ କୃଷ୍ଣ ସନ୍ତୁଷ୍ଟ ହୁଅନ୍ତି । ସ୍ନାନ ପରେ ତୁଳସୀ ପତ୍ର ପାନ କଲେ ମନ ସ୍ଥିରତା ଓ ଶରୀର ପବିତ୍ରତା ଲାଭ କରେ ।

ମଧ୍ୟେ ବ୍ରହ୍ମା ମୂଳେ ବିଷ୍ଣୁଃ ପତ୍ରେ ଚ ଶିବ ମୁଚ୍ୟତେ,
ମୂଳ ତୋ ବିଷ୍ଣୁରୂପାୟ ବୃକ୍ଷରାଜ ନମସ୍ତୁତେ ।
ବୃନ୍ଦାୟୈ ତୁଳସୀ ଦେବୈପ୍ରିୟାୟୈ କେଶବସ୍ୟ ଚ
ବିଷ୍ଣୁ ଭକ୍ତି ପ୍ରଦେ ଦେବୀଂ ସତ୍ୟବତୈ ନମୋନମଃ ।

ତୁଳସୀଙ୍କର ଆଠଗୋଟି ନାମ । ୧- ବୃନ୍ଦା, ୨- ବୃନ୍ଦାବତୀ, ୩- ବିଶ୍ୱ ପୂଜିତା, ୩- ବିଶ୍ୱ ପାବନୀ, ୫- ପୁଷ୍ପସାରା, ୬-ନନ୍ଦିନୀ, ୭- ତୁଳସୀ, ୮- କୃଷ୍ଣଜୀବନୀ । ତୁଳସୀ ଶ୍ରୀକୃଷ୍ଣଙ୍କର ପ୍ରାଣବଲ୍ଲଭୀ ଭାବେ ବିଶ୍ୱ ବନ୍ଦନୀୟା ।

ତୁଳସୀ ନାମାଷ୍ଟକ ସ୍ତୋତ୍ର ପାଠ କଲେ ଅଶ୍ୱମେଧ ଯଜ୍ଞର ଫଳ ପ୍ରାପ୍ତି ହୋଇଥାଏ । କାର୍ତ୍ତିକ ପୂର୍ଣ୍ଣମା ଦିନ ବା କାର୍ତ୍ତିକ ମାସରେ ତୁଳସୀଙ୍କୁ ଭକ୍ତିପୂତ ଭାବରେ ପୂଜା କଲେ ସମସ୍ତ ପାପରୁ ମୁକ୍ତି ମିଳିଥାଏ ଓ ଅନ୍ତିମ କାଳରେ ବିଷ୍ଣୁଲୋକକୁ ଗମନ କରନ୍ତି ବୋଲି ବର୍ଣ୍ଣନା ମାନ ଦେଖିବାକୁ ପାଉ । ଏହି ମାସରେ ତୁଳସୀ ପତ୍ର ବିଷ୍ଣୁଙ୍କୁ ଅର୍ପଣ କଲେ ଦଶ ସହସ୍ର ଗୋଦାନର ଫଳ ପ୍ରାପ୍ତି ହୋଇଥାଏ ।

ଗୋବିନ୍ଦ ବଲ୍ଲଭାଂ ଦେବୀଂ ଭକ୍ତି ଚୈତନ୍ୟ କାରିଣୀଂ ।
ସ୍ନାପୟାମୀ ଜଗଧାତ୍ରୀଂ ବିଷ୍ଣୁଭକ୍ତି ପ୍ରଦାୟନୀଂ ।
ତ୍ରିପୁରାରୀ ନମୋ ନମଃ ।

ସାଧାରଣତଃ ତୁଳସୀ ବୃକ୍ଷ ଆମ ଦେଶରେ ୭ ପ୍ରକାରର ଦେଖିବାକୁ ମିଳେ । ୧. କୃଷ୍ଣ ତୁଳସୀ, ୨, ଶ୍ୱେତ ତୁଳସୀ, ୩. ଗନ୍ଧ ତୁଳସୀ, ୪. ରାମ ତୁଳସୀ, ୫. ବନତୁଳସୀ, ୬. ବେଲ, ଗନ୍ଧଯୁକ୍ତ ତୁଳସୀ, ୭. ସର୍ବରା ତୁଳସୀ । ତୁଳସୀଙ୍କୁ ଶ୍ରୀଂ ହ୍ରୀଂ କ୍ଲୀଂ ଏ ବୃନ୍ଦାବତ୍ୟୈ ସ୍ୱାହା ଏହି ଦଶାକ୍ଷର ମନ୍ତ୍ରର ପୂଜା କରାଯାଏ । 'କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନ ବଲ୍ଲଭାୟ ସ୍ୱାହା' ଏହି ମନ୍ତ୍ରରେ ଆବାହନ କଲେ ସର୍ବସିଦ୍ଧି ପ୍ରାପ୍ତ ହୁଏ ।

'ସତ୍ୟ ଯୁଗେ ତୋ'ର ନାମ ବୃନ୍ଦାବତୀ ତ୍ରେତୟା ଯୁଗେ ମାଳତୀ ।
ଦ୍ୱାପର ଯୁଗରେ ନାମ ତୋ' ତ୍ରିପୁରା କଳିଯୁଗେ ବୃନ୍ଦାବତୀ ।'

ତୁଳସୀ ନାମାଷ୍ଟକ ସ୍ତୋତ ପଠନ ଦ୍ୱାରାହୀନର ପୁତ୍ରପ୍ରାପ୍ତି, ବନ୍ଧୁହୀନକୁ ବନ୍ଧୁପ୍ରାପ୍ତି, ସ୍ତ୍ରୀ ପରିତ୍ୟକ୍ତ ବ୍ୟକ୍ତି ସ୍ତ୍ରୀପ୍ରାପ୍ତି ହୋଇଥାଏ ଓ ରୋଗ ଶୋକ ଦୂରୀଭୂତ ହୁଏ, ବାନ୍ଧନ ବ୍ୟକ୍ତି ବନ୍ଧନରୁ ମୁକ୍ତି ଏବଂ ପାପୀ ସର୍ବପାପରୁ ମୁକ୍ତ ହୋଇଥାଏ ।

ମାଗୋ ତୁଳସୀ ଦେବୀ, ଅଟ ଶ୍ରୀକୃଷ୍ଣ ପ୍ରାଣ ବଲ୍ଲଭୀ
ପ୍ରଭାତୁ ଉଠିଣ ତୋ' ମୁଖ ଚାହିଁଣ, ସନ୍ଧ୍ୟାକାଳେ ସନ୍ଧ୍ୟା ଦେଇ
ଓଦାବସ୍ତ୍ର ପିନ୍ଧି ତୋ' ପାଦ ସେବିଲେ, ବୈକୁଣ୍ଠ ଲଭିବା ପାଇଁ,
ମାଗୋ ବୃନ୍ଦାବତୀ...... ।

ତୁଳସୀ ଦେବୀଙ୍କୁ ପ୍ରଭାତରୁ ଦର୍ଶନ କରି ନମସ୍କାର କଲେ ସର୍ବ ବାଧା ବିଘ୍ନ, ଆପଦ ବିପଦ ଦୂର ହୋଇଥାଏ । ଶ୍ରୀକୃଷ୍ଣଙ୍କର ତୁଳସୀ ଅତିପ୍ରିୟ ଭାବେ ପୂଜିତା । ତୁଳସୀଙ୍କୁ ସନ୍ତୁଷ୍ଟ କରିପାରିଲେ ବୈକୁଣ୍ଠ ପ୍ରାପ୍ତି ହୋଇଥାଏ । ସତ୍‌ବିଶ୍ୱାସ ଓ ସତ୍‌ଚିନ୍ତା ନେଇ ତୁଳସୀକୁ ପୂଜା କଲେ ଶ୍ରୀକୃଷ୍ଣଙ୍କର ସାନ୍ନିଧ ସହଜରେ ମିଳିପାରେ । ତୁଳସୀଙ୍କୁ ଭକ୍ତିପୂତ ଭାବରେ ଧ୍ୟାନ କଲେ ଓ ଜପ କଲେ ସର୍ବ କାର୍ଯ୍ୟରେ ସୁଫଳ ମିଳିଥାଏ । ବିଷ୍ଣୁଙ୍କୁ ତୁଳସୀ ପତ୍ର ଦେଇ ପୂଜା କରିବା ଦ୍ୱାରା ବିଷ୍ଣୁ ଭକ୍ତର ମନଭୀଷ୍ଟ ପୂରଣ କରନ୍ତି, ମୃତ୍ୟୁପରେ ବୈକୁଣ୍ଠରେ ସ୍ଥାନ ଦିଅନ୍ତି । ସ୍ନାନ ପରେ ବୃନ୍ଦାବତୀ ମୂଳରେ ଜଳ ପ୍ରଦାନ କଲେ ସମସ୍ତ ରୋଗ ଦୂରୀଭୂତ ହୁଏ ଏବଂ ସେହି ପାଣି ପାନ କଲେ ଗଳା ସଫା ହୁଏ ଓ ହଜମ ପ୍ରକ୍ରିୟା ବଢ଼ିଥାଏ । ସେହି ମାଟି ମୁଣ୍ଡରେ ଧାରଣ ମଧ୍ୟ କରାଯାଏ, ତା' ଦ୍ୱାରା ତ୍ରିଜଗତ ବଶୀଭୂତ ହୋଇଥାନ୍ତି । ମନରେ ପବିତ୍ରତା ଓ ଶାନ୍ତି ଆସିଥାଏ । ସତ୍ ଚିନ୍ତାରେ ମନୁଷ୍ୟର ମନ ନିମଜ୍ଜିତ ରହେ ।

ଯାନି ଯାନି ଚ ପାପାନି ବହ୍ମହତ୍ୟାଦୀକାଳିଚ
ତାନି ତାନି ପ୍ରଣସ୍ୟନ୍ତି ପ୍ରଦକ୍ଷଣଂ ପଦେପଦେ ।
ଯତ୍ ପାପଂ ଯୌବନ ବାଲ୍ୟ କୌମାରେ ବାର୍ଦ୍ଧକ୍ୟେ କୃତଂ
ଯତ୍ ପାପଂ ନିଳୟଂ ଯାତୁ ତୁ ସୀଦ୍ୱତ୍ ପ୍ରଦକ୍ଷଣାତ୍ ।

ତୁଳସୀ ପତ୍ର ଖାଦ୍ୟରେ ପଡ଼ିବା ଦ୍ୱାରା ସେହି ଖାଦ୍ୟ ଅମୃତରେ ପରିଣତ ହୁଏ । ଖାଦ୍ୟ ଗ୍ରହଣ କରିବା ପୂର୍ବରୁ ତଲୁସୀ ପତ୍ର ଓ ସାମାନ୍ୟ ପାଣି ଗ୍ରହଣ କରିବା ଦ୍ୱାରା ଖାଦ୍ୟ ସହଜରେ ପରିପାକ ହୋଇଥାଏ । ତୁଳସୀ ଅସ୍ଥି ଓ ମାଳା କଣ୍ଠରେ ଧାରଣ କଲେ ଚିତ୍ତ ସ୍ଥିର, ପବିତ୍ର, ଶାନ୍ତ, ସତ୍‌ଚିନ୍ତାରେ, ସତ୍ କର୍ମରେ ମନ ନିମଜ୍ଜି ରହେ, ଏବଂ ଚକ୍ତଚାପ ରୋଗ ଦୂର କରିହୁଏ । ହସ୍ତରେ ଏହାକୁ ଧରି ଜପ କରିବା ଦ୍ୱାରା ହସ୍ତ ପବିତ୍ର ହେବା ସଂଗେସଂଗେ ସର୍ବାଂଗ ମଧ୍ୟ ପବିତ୍ର ହୋଇଥାଏ ଓ ରୋଗ ଶରୀର ମଧ୍ୟକୁ ସହଜରେ ପ୍ରବେଶ କରିପାରେ ନାହିଁ । ବାହୁ ଓ ଗଳାରେ ଧାରଣ କରିବା ଦ୍ୱାରା ରକ୍ତ ସଂକ୍ରମଣର ଭୟାବହତା ଶରୀର ଉପରେ ପଡ଼ି ନଥାଏ । ଶରୀର ବ୍ରହ୍ମ ତେଜରେ ତେଜିୟାନ୍ ହୋଇଉଠେ । ସ୍ତ୍ରୀଲୋକମାନେ ମାଳା ଓ ତିଳକ ଧାରଣ କରିବା ଦ୍ୱାରା ବିଷ୍ଣୁଙ୍କ ପଦ ଦର୍ଶନ କରିପାରନ୍ତି । ସନ୍ନ୍ୟାସିନୀମାନେ ଏହାକୁ ଧାରଣ କଲେ ବ୍ରହ୍ମଚର୍ଯ୍ୟ ସ୍ଖଳିତ ହୋଇନଥାଏ । ମନ ଓ ଚିତ୍ତ ସବୁ ମାର୍ଗରେ ଗମନ କରେ ।

'ତୁଳସୀର ମାଳ ତୁଳସୀର ଚୂଳ ତୁଳସୀ ଭୂଷଣ ହୋଇ
ତୁଳସୀ ମୂଳରେ ଲୟ ଲଗାଇଲେ ନୀଳଚକ୍ର ଦିଶୁଥାଇ ।
ମୂଳେ ତୋ'ର ଗଂଗା ଡାଳେ ତୋ'ର ବିଷ୍ଣୁ ପତ୍ରେ ଦେବତାଙ୍କ ବାସ
ତୋ' ପାତ୍ର ପଡ଼ିଲେ ମଣୋଇ ହୁଅଇ କହଇ ଗୋଲକ ଦାସ ।

ମନୁଷ୍ୟ ଶରୀରରୁ ପ୍ରାଣ ଛାଡ଼ିଲେ ଅଗ୍ନି ସଂଯୋଗ ସମୟରେ ତୁଳସୀ କାଠ ଦିଆଯାଏ । ଏହା ଦ୍ୱାରା ଶରୀର ବୈକୁଣ୍ଠ ପ୍ରାପ୍ତି ଲାଭ କରେ ଓ ବାୟୁ ମଣ୍ଡଳରେ କୌଣସି କୁ-ପ୍ରଭାବ ପଡ଼ିନଥାଏ । ଏହାଦ୍ୱାରା ଭୂମି ପବିତ୍ର ହୋଇଥାଏ । ମୃତ ଶରୀର ପ୍ରତିକ୍ରିୟା ପ୍ରଭାବକୁ ତୁଳସୀ ବୃକ୍ଷ ଗ୍ରହଣ କରିନିଏ । ଯାହାଫଳରେ ପ୍ରାଣୀ ଜଗତର କୌଣସି ଅନିଷ୍ଟ ଘଟି ନଥାଏ । ତୁଳସୀ ବୃକ୍ଷ ନିକଟରେ ଛୁଆଁ ଅଛୁଆଁର ଭେଦଭାବ ନଥାଏ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଏହାର ଯତ୍ନ ନେବା ଓ ପୂଜାର୍ଚ୍ଚନା କରିବା ନିତ୍ୟାନ୍ତ ଜରୁରୀ ବୋଲି ମନେହୁଏ ।

ତୁଳସୀ ବୈଷ୍ଣବୀ ବୃନ୍ଦା ସୁଗନ୍ଧାଗନ୍ଧ ହାରିଣୀ ।
ଅମୃତା ପତ୍ର ପୁଷ୍ପା ଓ ପବିତା ସୁର ବଲ୍ଲଭୀ ।

ତୁଳସୀ ବୃକ୍ଷ ମୂଳରେ ନାରୀମାନେ ବସି ପ୍ରାର୍ଥନା କରିଥାନ୍ତି । ମା' ତୁଳସୀ ଈଶ୍ୱରୀ ତ୍ରିପୁରା ସୁନ୍ଦରୀ ବିଷ୍ଣୁ ଦ୍ୱାରେ ଆଉ ନିତ୍ୟ ରାହାସ କରୁଥାଉ, ବିପଦ କାଳରେ ସୁମରିଲେ ମାହେଶ୍ୱରୀ ମାୟୀ, ଆସ ଆସ ଆସ ହରିର ଘରଣୀ ହରିର ପ୍ରିୟା, ମୋତେ ପ୍ରସନ୍ନ ହୁଅ ମହାମାୟା, ଓଁ ଶାନ୍ତିଃ ଓଁ ଶାନ୍ତିଃ, ଓଁ ଶାନ୍ତିଃ ।

ତୁଳସୀର ଶକ୍ତି-

୧. ତୁଳସୀ ପତ୍ର ଉପରେ ଶିଶୁମାନଙ୍କୁ ଶୟନ କରାଇଲେ ଶିଶୁର ଜ୍ଞାନ ବୃଦ୍ଧି ଘଟିଥାଏ ।

୨. ତୁଳସୀ ବୃକ୍ଷ ଘର ପାଖରେ ଥିଲେ ବଜ୍ରପାତ ଘରକୁ ବାଟି ନଥାଏ ।

୩. ପ୍ରତ୍ୟେହ ପ୍ରଭାତରୁ ଉଠି ମୁଖ ଧୌତ କରି ପୂର୍ବ ମୁଖ୍ୟକୁ ମୁଣ୍ଡାୟମାନ ହୋଇ 'ହ୍ରୀଂ, କ୍ଲୀଂ ଚାମୁଣ୍ଡେ ବିଚେ' ଏହି ମନ୍ତ୍ରକୁ ପଢ଼ି ନମସ୍କାର କଲେ ସମସ୍ତ ଦୁଃଖ ଦୂର ହୋଇଥାଏ ।

୪. ତୁଳସୀ ମୂଳରେ ବସି ମନ୍ତ୍ର ଜପ କଲେ ସାଧନାରେ ସିଦ୍ଧି ଘଟିଥାଏ ।

୫. ତୁଳସୀର ଡାଳ ବା ପତ୍ର ସାଂଗରେ ଥିଲେ ହିଂସ୍ର ବ୍ୟକ୍ତିର ଆଚରଣରେ ପରିବର୍ତ୍ତନ ଆସିଥାଏ ।

୬. ତୁଳସୀ ପତ୍ର ରସ ପାନ କଲେ ପିହୁଳା ରୋଗ ଦୂର ହୁଏ ।

୭. ପୂର୍ଣ୍ଣିମା ଦିନ ତୁଳସୀ ମୂଳର ମାଟି ଓ ପତ୍ର ପାଖରେ ଥିଲେ ବିବାଦରେ ବିବାଦକାରୀ

କୌଣସି କ୍ଷତି ଘଟାଇପାରେ ନାହିଁ ।

୮. ସ୍ନାନ ପରେ ତୁଳସୀ ମୂଳରେ ଜଳ ଦେଇ ସେହି ମାଟିକୁ ମସ୍ତକରେ ଧାରଣ କଲେ ସମସ୍ତ ରିଷ୍ଟ ନଷ୍ଟ ହୋଇଥାଏ ।

୯. ନିଜର ଜନ୍ମ ନକ୍ଷତ୍ର ଯୁକ୍ତ, ରବିବାର, ଶନିବାର ଓ ମଂଗଳବାର ଦିନ ତୁଳସୀ ମଲାଙ୍ଗକୁ ଆଣି ବ୍ୟବସାୟୀ ଘରେ ରଖିଲେ ବ୍ୟବସାୟରେ ଲାଭ ମିଳେ ଓ ସମସ୍ତେ ବଶୀଭୂତ ହୁଅନ୍ତି ।

୧୦. ଗୋରଚନା, ତୁଳସୀ ପତ୍ର, ହରିତାଳ, କସ୍ତୁରୀ ଏକତ୍ର ଘୋରି ମସ୍ତକରେ ଘେନିଲେ ରଜାଠାରୁ ପ୍ରଜାଯାଏ ସମସ୍ତେ ବଶ୍ୟତା ସ୍ୱୀକାର କରନ୍ତି ।

୧୧. ଅମାବାସ୍ୟା ଦିନ ରାତିରେ ଶ୍ମଶାନରେ ଉଠିଥିବା କୃଷ୍ଣତୁଳସୀ ବୃକ୍ଷର (ପୂର୍ବ) ଦିଗରୁ ଚେର ଆଣି ଘୋରି ଅଜାଣତରେ ଖାଇବାକୁ ଦେଲେ ସ୍ତ୍ରୀ ବା ପୁରୁଷର ଅମେଳ ଥିଲେ ତାହା ଦୂର ହୋଇଥାଏ ।

୧୨. ତୁଳସୀ ବଗିଚାରେ ଶୟନ କଲେ ଚର୍ମ ରୋଗ ହୁଏ ନାହିଁ ।

୧୩. ତୁଳସୀ ବୃକ୍ଷ ଘର ଦ୍ୱାରରେ ଓ ଘରର ଚତୁଃପାର୍ଶ୍ୱରେ ଥିଲେ ଗୃହକୁ ବିଷଧର ସର୍ପ ପ୍ରବେଶ କରିପାରେ ନାହିଁ ।

୧୪. ସୁନା କିମ୍ବା ତମ୍ବା ତେଉଁରିଆରେ ଶ୍ରୀଚନ୍ଦ୍ର ରବିବାର କିମ୍ବା ଶନିବାର ଦିନ ତୁଳସୀ ମଲାଙ୍ଗକୁ ଲାଲ୍ ସୂତାରେ ଧାରଣ କଲେ ବଜ୍ରପାତ କାଟେ ନାହିଁ ।

୧୫. କୃଷ୍ଣ ତୁଳସୀ ପତ୍ରକୁ ପୋକ କାମୁଡ଼ିବା ସ୍ଥାନରେ ଘଷିଲେ ବିଷ ଦୂର ହୁଏ ଓ ଯନ୍ତ୍ରଣା ଲାଘବ ହୋଇଥାଏ ।

ତୁଳସୀର ଗୁଣ ଅପାରୁ ଅପାର । ପ୍ରତ୍ୟେକ ବ୍ୟକ୍ତି ତୁଳସୀ ପୂଜନ କରିବା ବିଧେୟ । ଏହାର ଯତ୍ନ ନେବା ସହ ଏହାର ଗୁଣକୁ ସହୃଦୟତାର ସହ ହୃଦୟଙ୍ଗମ କରି ନିଜର ଓ ଅନ୍ୟର ଉପକାରରେ ଲଗାଇ ମାନବ ଜୀବନକୁ ରୋଗମୁକ୍ତ କରନ୍ତୁ,

"ନମସ୍ତେ କେଶବ ପ୍ରିୟା, ନମୋ ବୃନ୍ଦାବତୀ
ବିଷ୍ଣୁ ଭକ୍ତି ପ୍ରଦାୟିନୀ ଆହେ ସତ୍ୟବତୀ ।
ସତ୍ୟଯୁଗେ ସତ୍ୟବତୀ ତ୍ରେତୟାରେ ମାଳତୀ
ଦ୍ୱାପରରେ ବୃନ୍ଦାବତୀ ହେ ତୁଳସୀ ଧାତ୍ରୀ ।
ମହାପାତକ ନାଶିନୀ ଅନ୍ତେ ମୁକ୍ତିଦାତ୍ରୀ
ତୁମରି ପୟରେ ଢାଳେ ଭକତି ପ୍ରଣତି ॥"



# ଗଣପର୍ବ ଦୋଳ ମହୋତ୍ସବ

ଦେବ ଭୂମି, ସାଧୁସନ୍ଥର ଦେଶର ଭାରତ ବର୍ଷରେ ବାରମାସରେ ତେବ ପର୍ବ ପାଳନ କରାଯାଏ । ଋତୁ କାଳ ବସନ୍ତ ଋତୁରେ ପାଳିତ ହୁଏ ହିନ୍ଦୁମାନଙ୍କର ଶ୍ରେଷ୍ଠ ପର୍ବ ଦିବ୍ୟ ପୁରୁଷ ଭଗବାନ ଶ୍ରୀକୃଷ୍ଣଙ୍କର ଚାଚେରୀଲୀଳା । ଫାଲ୍ଗୁନ ଓ ଚୈତ୍ର ମାସକୁ ବସନ୍ତ ଋତୁଭାବରେ ଗ୍ରହଣ କରାଯାଏ । ଧରଣୀ ରାଣୀ ନୂତନ ପାଟ ପିତାମ୍ବରୀ ପରିଧାରଣ କରି ପୂର୍ଣ୍ଣାଙ୍ଗ ନବଯୌବନରେ ସୁଶୋଭିତ ହୋଇଥିବା ସମୟରେ ମୃଦୁମଳୟର ଗନ୍ଧରେ ତରୁଲତାମାନେ ନବପୁଲକିତ ହୋଇଉଠନ୍ତି । କୋକିଳର ମଧୁର କୁହୁକୁହୁ ତାନରେ ନାନାବିଧ କୁସୁମ ହୁଏ ବିକଶିତ । ଏହି ରମଣୀୟ ପରିବେଶ ମଧ୍ୟରେ ନରନାରୀଙ୍କର ତନୁମନ ହୁଏ ପୁଲକିତ । ଲାବଣ୍ୟର ତରଂଗରେ ତରଂଗାୟିତ ହୋଇ ବିଜେ କରନ୍ତି ଭୂପୃଷ୍ଠରେ ରାଧାକୃଷ୍ଣ । ଗ୍ରାମରୁ ନଗର ପର୍ଯ୍ୟନ୍ତ ଭକ୍ତମାନେ ପାଳନ କରନ୍ତି ମହାଆନନ୍ଦ ଉତ୍ସାହ ସହକାରେ ଦୋଳଯାତ୍ରା ।

ଫାଲ୍‌ଗୁନ ମାସର ପୂର୍ଣ୍ଣିମାକୁ ଦୋଳ ପୂର୍ଣ୍ଣିମା କୁହାଯାଏ । କେତେକ ସ୍ଥାନରେ ଦୋଳ ପୂର୍ଣ୍ଣିମାରୁ ୫-୭ ଓ ୧୦ ଦିନ ପର୍ଯ୍ୟନ୍ତ ଏହା ପାଳିତ ହେଉଥିବାରୁ ଏହାକୁ ପଞ୍ଚୁଦୋଳ, ସପ୍ତଦୋଳ ଓ ଦଶଦୋଳ କୁହାଯାଏ । ଏହି ପର୍ବର ପ୍ରଧାନ ଆରାଧ୍ୟ ଇଷ୍ଟ ଦେବତା ହେଉଛନ୍ତି ରାଧାକୃଷ୍ଣ ।

ଦୋଳେ ଚ ଦୋଳଗୋବିନ୍ଦଂ, ଚାପେଚ ମଧୁସୂଦନମ୍ ।

ରଥେତୁ ବାମନଂ ଦୃଷ୍ଟା, ପୁନର୍ଜନ୍ମ ନ ବିଦ୍ୟତେ ।

ଦୋଳ ପର୍ବର ଅନ୍ୟ ନାମ ବସନ୍ତ ରାସ ବା ବସନ୍ତ ଗୁଣ୍ଡିଚା । ଏହି ପର୍ବର ମୁଖ୍ୟ ଆକର୍ଷଣ, ଭାଇଚାରା, ସ୍ନେହ, ପ୍ରୀତି, ମମତା, ଆନ୍ତରିକତା, ସୌହାର୍ଦ୍ଦ୍ୟ ଓ ହୃଦୟ ମିଳନର ଏକ ମହାନ୍ ସର୍ବ ଜନାଦୃତ ଗଣପର୍ବ । ଏହି ମହୋତ୍ସବ, ଫାଲ୍‌ଗୁନ

ଶୁକ୍ଳ ଦଶମୀଠାରୁ ଆରମ୍ଭ ହୋଇ ଚୈତ୍ରକୃଷ୍ଣ ପ୍ରତିପଦ ପର୍ଯ୍ୟନ୍ତ ମୁଖ୍ୟତଃ ପାଳନ କରାଯାଏ । ଦୋଳ ଶବ୍ଦର ଅର୍ଥ ଦୋଳନ, ଦୋଳ ହେଉଛି ସୂର୍ଯ୍ୟଙ୍କ ବାସନ୍ତୀକ ଦିନ । ଏହି ଦିନଠାରୁ ସୂର୍ଯ୍ୟଙ୍କର ଦୋଳନଗତି ଆରମ୍ଭ ହୁଏ । ସୂର୍ଯ୍ୟଙ୍କ ପରି କୃଷ୍ଣଙ୍କର ମଧ୍ୟ ଦୁଇଥର ଦୋଳଯାତ୍ରା ପାଳନ କରାଯାଏ ।

ଶ୍ରାବଣ ପୂର୍ଣ୍ଣିମା ଅବ୍ୟବହିତ ପୂର୍ବରୁ ଭଗବାନ ଶ୍ରୀକୃଷ୍ଣ କଂସ ଓ ତା'ର ସହଯୋଗୀ ଅସୁରଙ୍କୁ ସଂହାର କରି ଗୋପ ନଗରୀରେ ଶାନ୍ତି ପ୍ରତିଷ୍ଠା କରିଥିବାରୁ ଗୋପପୁର ବାସୀ ଆନନ୍ଦ ଉଲ୍ଲାସରେ ରାଧାମାଧବଙ୍କୁ ଦୋଳ ବିମାନରେ ବସାଇ ଶ୍ରାବଣ ଶୁକ୍ଳ ଏକାଦଶୀଠାରୁ ଝୁଲଣ ପୂର୍ଣ୍ଣିମା ପର୍ଯ୍ୟନ୍ତ ଝୁଲଣ ଉତ୍ସବ ପାଳନ କରୁଥିଲେ । ଦୋଳପୂର୍ଣ୍ଣିମା ଅବ୍ୟବହିତ ପୂର୍ବରୁ ମଧ୍ୟ ମହାପ୍ରତାପୀ ଦାନବ ଶଙ୍ଖଚୂଡ଼ ଓ ଦାନବୀ ହୋଲିକା ଶ୍ରୀକୃଷ୍ଣଙ୍କ ଦ୍ୱାରା ନିହିତ ହୋଇଥିବାରୁ ଗୋପୀ ଗୋପାଳୁଣୀମାନେ ଶ୍ରୀରାଧା କୃଷ୍ଣଙ୍କୁ ଦୋଳରେ ବସାଇ ଦୋଳଯାତ୍ରା ମହାଆନନ୍ଦରେ ପାଳନ କରୁଥିଲେ । ପୂର୍ବର ଏହି ସ୍ମୃତି, ଐତିହ୍ୟ ଓ ପରମ୍ପରାକୁ ମନେରଖି ଆଜି ପର୍ଯ୍ୟନ୍ତ ହିନ୍ଦୁ ସମାଜରେ ପାଳନ କରାଯାଉଛି ଶ୍ରେଷ୍ଠ ପର୍ବ ରାଧାକୃଷ୍ଣଙ୍କର ଝୁଲଣ, ରାସଯାତ୍ରା, ଦୋଳଯାତ୍ରା ।

ଦ୍ୱାପର ଯୁଗରେ ମୈତ୍ରିନାମକ ରାକ୍ଷସ କବଳରୁ ଭଗବାନ ପ୍ରାଣୀ ଜଗତକୁ ରକ୍ଷାକରି ଶାନ୍ତି ପ୍ରତିଷ୍ଠା କରିଥିଲେ । ତା'ର ମୃତ୍ୟୁରେ ଜନ ଜଗତ ଆନନ୍ଦିତ ହୋଇ ଭଗବାନ କୃଷ୍ଣଙ୍କୁ ବିମାନରେ ବସାଇ ଦୋଳଉତ୍ସବ ପାଳନ କରୁଥିଲେ । ବୃନ୍ଦାବନ ଚନ୍ଦ୍ର ବୃନ୍ଦାବନଙ୍କୁ ରକ୍ଷା କରିବାକୁ ଯାଇ ମେଢ଼ ଅସୁରକୁ ନିହତ କରି ଶାନ୍ତି ସ୍ଥାପନ କରିଥିଲେ । ବୃନ୍ଦାବନରେ ଆନନ୍ଦ ଗଦ ଗଦ ଚିତ୍ତରେ ଜନସାଧାରଣ ଶ୍ରୀକୃଷ୍ଣ ଚନ୍ଦ୍ରଙ୍କୁ ବିମାନରେ ବସାଇ ବୃନ୍ଦାବନରେ ମହାଆନନ୍ଦରେ ପରିକ୍ରମା କରାଇ ଏହି ଉତ୍ସବକୁ ଆନନ୍ଦମନରେ ପାଳନ କରୁଥିଲେ । ଏହି ସମୟଟି ଥିଲା ଫାଲଗୁନ ପୂର୍ଣ୍ଣିମା, ଏଣୁ ଉକ୍ତ ଉତ୍ସବମୁଖର ଦିନଟିକୁ ଦୋଳୋତ୍ସବ କୁହାଯାଏ । ଏହି ଦିନ ରାଧା ଗୋପାଂଗନା, ଗୋପବାଳ, ଗୋପବାସୀଠାରୁ ବ୍ରଜବାସୀ ସର୍ବତ୍ର ପରସ୍ପର ମଧ୍ୟରେ ରଂଗ ବୋଳିହୋଇ ଦିବ୍ୟ ଅନନ୍ତ ପ୍ରେମର ସ୍ମୃତିକୁ ସାଇତି ରଖି ଆନନ୍ଦରେ ବିଭୋର ହୋଇ ଉଠୁଥିଲେ । ଶ୍ରୀକୃଷ୍ଣ ଓ ଗୋପାଙ୍ଗନାମାନଙ୍କ ମଧ୍ୟରେ ଥିଲା ଅପ୍ରାକୃତ ପ୍ରେମ, ଐଶ୍ୱରିକ ଜୀବ ଓ ପରମର ସଂଗମ ।

ପ୍ରଧାନତଃ ଫାଲ୍‌ଗୁନ ମାସ ଶୁକ୍ଳପକ୍ଷ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପାଂଚଦିନ ମହାଆଡ଼ମ୍ବର ସହକାରେ ପାଳିତ ହୁଏ ଓଡ଼ିଶାର ପୁରପଲ୍ଲୀଗୁଡ଼ିକରେ ଦୋଳପର୍ବ । ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତିକୁ ବିମାନରେ ବସାଯାଇ ଗାଁ ଗାଁ ବୁଲାଇ ଭୋଗ ଖୁଆଯାଏ । ସୁସଜ୍ଜିତ ବିମାନଟି ପ୍ରଧାନତଃ ନାଲିରଂଗର କପଡ଼ାରେ ସଜ୍ଜାଯାଇ ଗେଣ୍ଡୁ,

ରଜନୀଗନ୍ଧା, ଗୋଲାପଫୁଲ ହାରରେ ସୁଶୋଭିତ କରାଯାଏ । ବିମାନକୁ କାନ୍ଧେଇ ଗ୍ରାମରେ ମଧ୍ୟ ପରିକ୍ରମା କରାଯାଏ । ଅଗ୍ରଭାଗରେ ଛତ୍ରି, ବାନା, ତ୍ରାସ ଓ ଫୁଲ, ବାଦ୍ୟ, ଘଣ୍ଟା, ଖୋଳ, କରତାଳ, ଶଙ୍ଖ, ଆଲୋକମାଳା ଓ ଆକାଶବାଜି ଯନ୍ତ୍ରର କୁହୁକୁହୁ ନାଦରେ ଗ୍ରାମ ଉଚ୍ଛୁଳି ପଡୁଥାଏ । ଗ୍ରାମର ପ୍ରତିଘର ପାଖରେ ଗୋମୟରେ ପରିଷ୍କୃତ ହୋଇଥିବା ସ୍ଥାନରେ ବିମାନ ରଖାଯାଏ । ରାଧାକୃଷ୍ଣଙ୍କ ଉଦ୍ଦେଶ୍ୟରେ ଉଖୁଡ଼ା, ନଡ଼ିଆ, କଦଳୀ ଆଦି ସୁମିଷ୍ଟ ଦ୍ରବ୍ୟମାନ ସମର୍ପଣ କରିଥାନ୍ତି । ପୂଜାପଣ୍ଡା ପ୍ରଭୁଙ୍କ ଅଗ୍ରଭାଗରେ ଚାମର ବିଞ୍ଚୁଥାଏ । ନାନାରଂଗର ଅବିର ପ୍ରଭୁଙ୍କୁ ସମର୍ପଣ କରାଯିବା ପରେ ଭକ୍ତମାନେ ଏହାକୁ ଆଦର ସହକାରେ ପରସ୍ପର ମଧ୍ୟରେ ବୋଳାବୋଳି ହୋଇ ଆନନ୍ଦ ଅନୁଭବ କରିଥାନ୍ତି । ଜାତି, ଧର୍ମ, ବର୍ଣ୍ଣ, ଗୋତ୍ର ନିର୍ବିଶେଷରେ ସମସ୍ତେ ଏକାକାର ହୋଇ ପରସ୍ପରକୁ ଆନ୍ତରିକ ସହକାରେ ସ୍ନେହକରି ପ୍ରଭୁଙ୍କ ନିକଟରେ (ଶ୍ରୀରାଧାକୃଷ୍ଣ) ଧର୍ମ, ଅର୍ଥ, କାମ, ମୋକ୍ଷାଦି ଚତୁର୍ବର୍ଗ ଫଳପ୍ରାପ୍ତି ନିମିତ୍ତ ପ୍ରାର୍ଥନା କରିଥାନ୍ତି । ଉକ୍ତଦିନ ଖଡ଼ିରତ୍ନ ପଣ୍ଡିତ ନୂତନ ପାଞ୍ଜିକୁ ପ୍ରଭୁଙ୍କ ନିକଟରେ ପଠନ କରିଥାଏ । ରାଧାମାଧବଙ୍କୁ ଦୋଳ ବେଦୀରେ ବସାଯାଇ ଧୂପ, ଦୀପ ଓ କର୍ପୂରରେ ବନ୍ଦାପନା କରାଯାଏ ।

ଗୋପାଳ ଭାଇ ଭଉଣୀଙ୍କର ପ୍ରଧାନପର୍ବ । ଦୋଳ ଏହିଦିନ ପେଡ଼ି ଓ ସିନ୍ଦୁକରେ ରଖିଥିବା ପାଟ ପିତାମ୍ବରୀ ପରିଧାନ କରି ଗୁରୁଜନମାନଙ୍କଠାରୁ ସୁଆଶୀର୍ବାଦ ଭିକ୍ଷା କରିଥାନ୍ତି । ଗୋପାଳ ସଂପ୍ରଦାୟର ଗୋପାଳ ପୁଅମାନେ ବଂଶୀ, ଶଙ୍ଖ, ସିଂହ, ତୁରୀ ଓ ମର୍ଦ୍ଦଳ ଧ୍ୱନିରେ ମନମତାଣିଆ ରସପୂର୍ଣ୍ଣ ମାଦକଭରା ଲଉଡ଼ି ଖେଳରେ ରାଧାକୃଷ୍ଣଙ୍କ ଜୀବନୀ, ପରିଚର୍ଯ୍ୟାଲୀଳା ବର୍ଣ୍ଣିତ ଓଗାଳ ଗାନସହ ବାଡ଼ିଖେଳର ଦୃଶ୍ୟ ଅତୀବ ଚିତ୍ତାକର୍ଷକ ଓ ମନମୁଗ୍ଧକର ।

ଓଡ଼ିଆ ପୁଅର ଜୀବିକା କୃଷି । ବାଡ଼ିରେ ଫଳୁଥିବା କଷି ଆମ୍ବ ଓ ଚଣାକୁ ପ୍ରଭୁଙ୍କୁ ସମର୍ପଣ କରିଥାଏ । ବଉଳର ବାସ୍ନାରେ ବାସ୍ନାୟିତ ହେଉଥିବା ସମୟରେ ଗାଁ ଗହଳର ଗାଈଆଳମାନେ ଦୋଳଠାରୁ ନୂତନ ବର୍ଷପାଇଁ ଅନ୍ନ ଯୋଗାଡ଼ ନିମିତ୍ତ ଉକ୍ତ ଦିନଠାରୁ ମାଲିକ ପାଖରୁ ସମସ୍ତ ହିସାବପତ୍ର ନେଇ କାର୍ଯ୍ୟରେ ଯୋଗ ଦେଇଥାନ୍ତି ।

ଦୋଳ ଉତ୍ସବର ପ୍ରଧାନ ଆକର୍ଷଣ ମେଲଣ (ମେଲଣ) । ପଡ଼ିଆରେ ଠାକୁରମାନେ ବିମାନ ପଟୁଆରରେ ମେଲଣ ପଡ଼ିଆକୁ ଆସିଥାନ୍ତି । ମେଲଣ ପଡ଼ିଆଟି ଅତୀବ ଚିତ୍ତାକର୍ଷକ ଦେଖାଯାଏ । ଏଠାରେ ନାନା ରକମର ବାଣ ଫୁଟାଯାଏ । ସଂକୀର୍ତ୍ତନ, ବାଜା ଓ ରୋଷଣୀରେ ଗଗନ ପବନ ମୁଖରିତ ହୋଇ ଉଠୁଥାଏ । ଘୋଡ଼ା ନାଚ, ବାଇନାଚ, ଭଜନ, ଜଣାଣ, ଗୋଟିପୁଅ ନାଚ ସହ ମେଲଣ ପଡ଼ିଆଟି

ଜନସମୁଦ୍ରରେ ଉଚ୍ଛୁଳିଥାଏ । ବିମାନଗୁଡ଼ିକ ଆସି ମେଲଣ ପଡ଼ିଆରେ ନିର୍ଦ୍ଦିଷ୍ଟ ସ୍ଥାନରେ ଆସନ ଅଳଂକୃତ କରିବା ପରେ ଦିଅଁମାନଙ୍କୁ ଭୋଗ ଲଗାଯାଏ ଓ ମାଲସା ହାଣ୍ଡି ପ୍ରଦାନ କରାଯାଏ । ହୁଳହୁଳି ଓ ହରିବୋଲ ଧ୍ୱନିରେ ଗଗନ ପବନ ମୁଖରିତ ହେଉଥିବା ସମୟରେ ବିମାନଗୁଡ଼ିକୁ ବୃତ୍ତାକାରରେ ପଡ଼ିଆ ଚାରିପଟରେ ବୁଲାଯାଏ । ଭକ୍ତ ଓ ଭଗବାନଙ୍କର ସଂଗମ ଏହିଠାରେ ଦେଖିବାକୁ ମିଳିଥାଏ । ମେଲଣ ସମାପ୍ତି ପରେ ବିମାନଗୁଡ଼ିକ ଯେଝା ମନ୍ଦିରକୁ ଫେରିଥାନ୍ତି । ଶ୍ରୀଜୀଉମାନଙ୍କୁ ସ୍ନାନ କରାଯାଇ, ରତ୍ନ ସିଂହାସନରେ ବସାଇ ପୌଢ଼ ଭୋଗ ଲଗାଯିବାପରେ ବିଶ୍ରାମ ନିମିତ୍ତ ପ୍ରାର୍ଥନା କରାଯାଏ । ଦୋଳ ପର୍ବକୁ ଭାଇଚାରାର ଏକ ମହାନ ପର୍ବ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଓଡ଼ିଶାରେ ପ୍ରଧାନତଃ ଯାଜପୁର, କଟକ, ପୁରୀ, ବାଲେଶ୍ୱର, ଭଦ୍ରକ, ଗଞ୍ଜାମ, କେନ୍ଦ୍ରାପଡ଼ା ଆଦି ବିଭିନ୍ନ ସ୍ଥାନରେ ଦୋଳଉତ୍ସବ ପାଳନ କରାଯାଏ ।

ମେଲଣ ପଡ଼ିଆର ଚତୁଃପାର୍ଶ୍ୱରେ ବିଭିନ୍ନ ପ୍ରକାର ଦୋକାନ ଦେଖିବାକୁ ମିଳେ । ସେଗୁଡ଼ିକ ମଧ୍ୟରେ ପ୍ରଧାନତଃ ଖେଳଣା ଦୋକାନ, ମନୋହରି ଦୋକାନ, କଂସାବାସନ ଦୋକାନଗୁଡ଼ିକରେ ସ୍ତ୍ରୀଲୋକମାନଙ୍କର ଭିଡ଼ ଜମିଥାଏ । ଦୋକାନଗୁଡ଼ିକ ଧାଡ଼ିଧାଡ଼ି ହୋଇ ବସିଥାଏ । ଜନଗହଳି ମଧ୍ୟରେ ମଧ୍ୟ ବୁଲା ବିକାଳିମାନେ ବୁଲିବୁଲି ବେଲୁନ, ପେଁକାଳି, ଆଦି ବିଭିନ୍ନ ଖେଳନା ବିକୁଥିବାର ଦେଖିବାକୁ ମିଳେ ।

ରଂଗ ଓ ଅବିରର ଖେଳ ହେଉଛି ହୋଲି, ଯାହା ଆନନ୍ଦର ଗଣପର୍ବ । ପିଚିକାରୀରେ ରଂଗପାଣି ପୂରାଇ ଆବାଳ ବୃଦ୍ଧ ବନିତା ପରସ୍ପର ମଧ୍ୟରେ ଆନନ୍ଦରେ ବୋଳାବୋଳି ହୋଇଥାଆନ୍ତି । ଜାତ, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଏହି ଉତ୍ସବକୁ ଆନନ୍ଦସହକାରେ ପାଳିଥାନ୍ତି । ଆଜି କିନ୍ତୁ ଆନନ୍ଦ ଉତ୍ସବକୁ କେତେକ ବିଶୃଙ୍ଖଳିତ ବ୍ୟକ୍ତି ନିରାଡ଼ମ୍ବରେ ପରିଣତ କରିବାକୁ ପଛାଉ ନାହାନ୍ତି । ସେମାନେ ଦେଶ ଓ ଜାତିର ଶତ୍ରୁ । ସେମାନଙ୍କ ପ୍ରତି ସତର୍କ ରହିବା ବିଧେୟ । କେମିକାଲ ରଂଗ ଶରୀର ପକ୍ଷରେ ବହୁକ୍ଷତି କାରକ, ଏହା ସମସ୍ତେ ମାନିନେବା ଉଚିତ୍ ।

ରସରାଜ କୃଷ୍ଣଚନ୍ଦ୍ର ଓ ପ୍ରେମମୟୀ ଶ୍ରୀରାଧା ଅବିର ଖେଳରେ ମଜ୍ଜି ଜୀବନକୁ ପୂର୍ଣ୍ଣ ରସମୟ କରିଥିଲେ । ଏହା ପୁରାଣଗୁଡ଼ିକରୁ ଜଣାଯାଏ । ଯଥା- ବ୍ରହ୍ମାଣ୍ଡ ପୁରାଣ, ସ୍କନ୍ଦପୁରାଣ, ପଦ୍ମପୁରାଣ, ଲିଂଗପୁରାଣ ଓ ଭାଗବତ । ମହାମହିମା ସମ୍ରାଟ ଆକବର ଓ ବିକ୍ରମାଦିତ୍ୟ ହୋଲିର ଗୁରୁତ୍ୱ ଉପଲବ୍ଧ କରିଥିଲେ । ଅତ୍ୟାଧୁନିକ ରାସାୟନିକ ରଂଗ ଆଜି ଜନଜୀବନକୁ ଅସ୍ତବ୍ୟସ୍ତ କରିଚାଲିଛି, ଏଣୁ ଲୋକମାନେ ଆଜି ହୋଲିର

ପବିତ୍ରତା ଓ ମାଦକତାକୁ ଉପଲବ୍ଧ କରିପାରୁ ନାହାଁନ୍ତି । କୁରଂଗର ପ୍ରଭାବରେ, ଚକ୍ଷୁ, ଚର୍ମ ଓ କେଶର କ୍ଷତି ଘଟୁଥିବାରୁ ହୋଲି ପରି ପବିତ୍ର ଆନନ୍ଦ ଉତ୍ସବରୁ ଅନେକ ଲୋକ ବିରତ ରହୁଛନ୍ତି, ଏହା ସମାଜ ପକ୍ଷେ ଶୁଭଙ୍କର ନୁହେଁ ।

ଓଡ଼ିଶାର ଶ୍ରେଷ୍ଠ ଦେବତା ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ମଧ୍ୟ ଦୋଳଯାତ୍ରା ପାଳନ କରାଯାଏ । ଏହା ୧୨୧୩ ଖ୍ରୀଷ୍ଟାବ୍ଦରୁ ପାଳିତ ହୋଇଆସୁଥିବାର ମାଦଳା ପାଞ୍ଜିରୁ ଜଣାଯାଏ । ପ୍ରଥମତଃ ଅନଂଗ ଭୀମଦେବ ଶ୍ରୀମନ୍ଦିରରେ ଏହି ଉତ୍ସବର ଶୁଭାରମ୍ଭ କରିଥିଲେ । ସେ ଫଗୁ, ଚାଚେରୀ ପାଇଁ ୩୦ ମାଢ଼ ଓ ଦୋଳଯାତ୍ରା ପାଇଁ ୧୦୦ ମାଢ଼ରୁ ଊର୍ଦ୍ଧ୍ୱ ସୁନାଖଞ୍ଜା ପ୍ରଦାନ କରିଥିଲେ । ଦୋଳରେ ଦକ୍ଷିଣାବର୍ତ୍ତୀ ଦୋଳଗୋବିନ୍ଦଙ୍କୁ ଦର୍ଶନ କଲେ ଜନ୍ମଜନ୍ମାନ୍ତରର ପାପମୋଚନ ହୋଇଥାଏ ବୋଲି ବିଶ୍ୱାସ କରାଯାଏ ।

ରାଧାକୃଷ୍ଣଙ୍କ ମେଲଣ ପରିସମାପ୍ତି ପରେ ଆରମ୍ଭ ହୁଏ ଅୟାଘେରା ଉତ୍ସବ । ଗାଁ ମୁଣ୍ଡରେ ତାଳବରଡ଼ାରେ ଅଗ୍ନି ସଂଯୋଗ କରାଯାଏ । ବିମାନରେ ଠାକୁର ଅୟାଘେରାକୁ ତ୍ରିବାର ପ୍ରଦକ୍ଷିଣ କରିଥାନ୍ତି । ଏହାକୁ ମେଣ୍ଢାପୋଡ଼ି ବୋଲି କୁହାଯାଏ ।

ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶଯାତ୍ରା ମଧ୍ୟରେ ଦୋଳଯାତ୍ରା ପ୍ରଧାନ । ଶ୍ରୀଚୈତନ୍ୟ ଦେବଙ୍କ ଓଡ଼ିଶା ଆଗମନ ସମୟରେ ଉତ୍କଳୀୟ ସଂସ୍କୃତିରେ ଦୋଳପର୍ବର ଗୁରୁତ୍ୱ ବଢ଼ିଥିଲା । ଶ୍ରୀଜଗନ୍ନାଥଙ୍କଠାରେ କୃଷ୍ଣ ଓ ଶ୍ରୀ ରାଧାଙ୍କର ବ୍ରହ୍ମତ୍ୱ ରହିଥିବାର ଦେଖି ସେ ଶ୍ରୀମନ୍ଦିରେ ଦୋଳଯାତ୍ରାର ଶୁଭାରମ୍ଭ କରିଥିଲେ । ଯିଏ ଜଗନ୍ନାଥ ସିଏ ଶ୍ରୀ କୃଷ୍ଣଚନ୍ଦ୍ର ଓ ବିଷ୍ଣୁ ରୂପରେ ଦାରୁବ୍ରହ୍ମ ଓ ପରମବିଷ୍ଣୁ ଶ୍ରୀନାରାୟଣ ରୂପରେ ଉପାସିତ । ଶ୍ରୀଜଗନ୍ନାଥଙ୍କ ଦୋଳଯାତ୍ରାରେ, ରାଧାକୃଷ୍ଣଙ୍କ ବଦଳରେ ଶ୍ରୀଜଗନ୍ନାଥ, ଲକ୍ଷ୍ମୀ ଓ ସରସ୍ୱତୀ ପୂଜିତା । ଦୋଳୋତ୍ସବ ଦିନ ଶ୍ରୀଜଗନ୍ନାଥଙ୍କ ବିଜେ ପ୍ରତିମା ଶ୍ରୀଦୋଳ ଗୋବିନ୍ଦ ଶ୍ରୀଦେବୀ (ଲକ୍ଷ୍ମୀ) ଓ ଭୂଦେବୀ (ସରସ୍ୱତୀ) ବିମାନରେ ଦୋଳବେଦୀକୁ ବିଜେ କରନ୍ତି । ଶୁଭ ଫଗୁ ଦଶମୀରେ ସମସ୍ତେ ସତ୍ୟ, ଧର୍ମ, ଅହିଂସା ଓ ବ୍ରହ୍ମଚର୍ଯ୍ୟକୁ ପାଥେୟକରି ଜୀବନ ପଥରେ ଅଗ୍ରସର ହୋଇ ପାହାଚ ପରେ ପାହାଚ ଚଢ଼ି ଚାଲିବାର ଦୃଢ଼ସଂକଳ୍ପ ନେବା ବିଧେୟ ।



# ଯେ ହିଁ ରାଧା ସେ ହିଁ କୃଷ୍ଣ

ଆରାଧନା ଶବ୍ଦରୁ ରାଧାନାମର ଜନ୍ମ । ରା କାରରୁ ଏହି ନାମ ପ୍ରକାଶିତ ହୋଇଅଛି, ତେଣୁକରି ଏହାର ନାମ ରାଧା ହେଲା । ରାଧା ଶବ୍ଦ- ର + ଅ + ଆ + ଧା ଅକ୍ଷରର ସୃଷ୍ଟି ଅଟେ । ଏହାକୁ ଓଲଟାଇ ଲେଖିଲେ ଅଧରଧାର । ଆଧାର ଆଦି ଶବ୍ଦ ହୁଏ । ଯାହାଙ୍କ ଅଧରରୁ ଅନବରତ ପରମାତ୍ମା ଭଗବାନଙ୍କ ନାମାମୃତ ଗାନ ଶୁଣାଯାଏ ସେ ହିଁ ରାଧା । ଶ୍ରୀରାଧାର ଗୁଣବିଶେଷ, ଶ୍ରୀ ଅର୍ଥ ଶୁଭ, ସୌନ୍ଦର୍ଯ୍ୟ, ସୁଗୁଣ, ସୁକାର୍ଯ୍ୟ, ସୁମନ, ସୁଚରିତ୍ର, ସୁବାକ୍ୟ, ସୁନିୟମ ଓ ସୁଚିନ୍ତିନ ଆଦର୍ଶ ଉପରେ ପର୍ଯ୍ୟବେଶିତ ହୋଇଥାଏ । 'ରା'ଟି ଜୀବର ମର୍ମ, 'ଧା'ଟି ପରମ । ରା' ସ୍ତ୍ରୀ, ଧା' ପୁରୁଷ ଜୀବ ଓ ପରମ, ଅଧେ ପୁରୁଷ ଅଧେ ସ୍ତ୍ରୀ ଅଟନ୍ତି । ଏହାଙ୍କଠାରୁ ଷୋଳକଳାର ସୃଷ୍ଟି । ମନୁଷ୍ୟ ହୃଦୟରେ ମଧ୍ୟ ଏହା ପରିପୂର୍ଣ୍ଣ ଭାବରେ ବିଦ୍ୟମାନ । ସେ ହିଁ ଆଦ୍ୟ, ସମସ୍ତ ଜଗତର କର୍ତ୍ତା, ଶ୍ରଦ୍ଧା, ସତ୍ୟରେ ରହିତ, ଆକାଶ, ବାୟୁ, ଅଗ୍ନି, ଜଳ, ପୃଥିବୀ, ଇନ୍ଦ୍ରିୟ ମନ (ଜ୍ଞାନ), ଅନ୍ନ, ବୀର୍ଯ୍ୟ, ତପ (ଧର୍ମାନୁଷ୍ଠାନ) ଓ ସତ୍ୟାଚାର ମନ୍ତ୍ର, କର୍ମ, ନାମ (ଦୃଶ୍ୟ ଅଦୃଶ୍ୟ ପଦାର୍ଥ)ରେ ବିଦ୍ୟମାନ । ଏଣୁ ରାଧେ କୃଷ୍ଣ, ରାଧେ କୃଷ୍ଣ ପୂର୍ଣ୍ଣବ୍ରହ୍ମ କଳାରେ ବିହରନ୍ତି ଚରାରେ ସୃଷ୍ଟି ଲୀଳା ଖେଳାରେ ।

ଯେ ରାଧା ସେ ହିଁ କୃଷ୍ଣଂ, ଯେ ହିଁ କୃଷ୍ଣ ସେ ହିଁ ରାଧା । ଏକ ବ୍ରହ୍ମ ନାମ ଭିନ୍ନ । ଟଙ୍କାର ଦୁଇପାର୍ଶ୍ୱ । 'ମୁମୁକ୍ଷୁତ୍ୱଂ' ଏହା ଏକ ସଂସ୍କୃତ ଶବ୍ଦ । ଯାହାର ଆକ୍ଷରିକ ଅର୍ଥ ଭଗବାନଙ୍କୁ ପାଇବା ପାଇଁ ହେଲେ ଅନ୍ତରଆତ୍ମା ଦ୍ୱାରା ରାଧାଙ୍କୁ ଦର୍ଶନ କଲେ ଭଗବାନଙ୍କୁ ପାଇବାକୁ ସହଜ ହୁଏ । ରାଧାକୁ ଓଲଟାଇ ଦେଲେ 'ଧାରା' ହୋଇଥାଏ । ଯାହା 'ଧାରା'ମାନେ (ପ୍ରବାହ) । ନଦୀ ସ୍ରୋତର ଓଲଟା ଦିଗରେ ଗଲେ ମଧ୍ୟ ମୂଳ ବା ଉତ୍ପତ୍ତି ସ୍ଥଳରେ ପହଞ୍ଚିହୁଏ । ଏଣୁ ସମସ୍ତ ବିଶ୍ୱବ୍ରହ୍ମାଣ୍ଡର ଉତ୍ପତ୍ତିସ୍ଥଳ ହେଲେ ବିଶ୍ୱନିୟନ୍ତା ଭଗବାନ ଶ୍ରୀକୃଷ୍ଣ । ରାଧା ଶ୍ରୀକୃଷ୍ଣଙ୍କୁ ପାଇବାକୁ ହେଲେ ସର୍ବଦା ବ୍ୟଗ୍ର ଓ ବ୍ୟସ୍ତ ବିବ୍ରତ ହେବା ଜରୁରୀ ଅଟେ । କାରଣ ମନୁଷ୍ୟ ଜନ୍ମ କ୍ଷଣକାଳ । ଏହି ସ୍ୱଳ୍ପ ସମୟ ମଧ୍ୟରେ ରାଧାକୃଷ୍ଣଙ୍କ ପ୍ରେମରେ ନିଜକୁ ନମଜ୍ଜାଇଲେ ଏ ଜୀବ ମୋକ୍ଷଲାଭ

କରିପାରେ ନାହିଁ । ହେ ସୁଜ୍ଞ ନର, ସତ୍ୟ ଧର୍ମ ପଥରେ ଅଗ୍ରସର ହୋଇ ରାଧା କୃଷ୍ଣଙ୍କ ଅନନ୍ତ ପ୍ରେମରେ ନିଜକୁ ହଜାଇ ଦିଅ । ଏଣୁ ଆଧାତ୍ମିକ ପରିକଳ୍ପନାରେ ଯଶୋବନ୍ତ ଦାସଙ୍କ ଲେଖନୀରୁ ଝରିପଡ଼େ ହରେକୃଷ୍ଣ ମହାମନ୍ତର ସାର 'ହ' ଅକ୍ଷର । ଭଦ୍ରଶାଖା ଗୁପତ ରୂପେ ଯେ ରାଧୀକା ।

'ରେ' ଅକ୍ଷର ଯେ ବଳଭଦ୍ର, ରେବତୀ ପତି ଅନୁଭବ ।
'କୃଷ୍ଣ' ଅକ୍ଷର କୃଷ୍ଣ ଦେହୀ, ଶ୍ରୀଜଗନ୍ନାଥ ଯାହା କହି ।
'ଣ' ଅସେ ସୁଦର୍ଶନ ପୁଣ, ୟେମନ୍ତେ ଚତୁର୍ଥ ପ୍ରମାଣ ।

ଆମେ ପାର୍ଥିବ (ଅଜ୍ଞାନ) ଚକ୍ଷୁରେ ରାଧାକୃଷ୍ଣ ପ୍ରେମକୁ ଯେପରି ଦେଖୁ ପ୍ରକୃତ ପକ୍ଷରେ ଏହା ସେପରି କଳଙ୍କ ପ୍ରେମ ଜମା ନୁହେଁ । ପ୍ରେମ ସର୍ବଦା ପବିତ୍ର ଗଂଗାଜଳ ଓ କଳଙ୍କଶୂନ୍ୟ । ଦୁଇ ଆତ୍ମାର ମିଳନ ସଂଗମ ଦ୍ୱାରା ଭଗବତ୍ ପ୍ରାପ୍ତି ହୋଇଥାଏ । ଭଗବତ୍ ପ୍ରାପ୍ତିରେ ଏ ଜୀବ କୃଷ୍ଣ ରାଧାମୟ ହୋଇଉଠେ । ଜଗତ୍ ମିଥ୍ୟା ସମସ୍ତ ବସ୍ତୁ ଭୋଗବିଳାସ ମାୟା ମରୀଚିକା ପରି ଲାଗେ । ଏଣୁ ମୀରାବାଈ କୃଷ୍ଣପ୍ରେମରେ ଏପରି ଭାବେ ମଜ୍ଜିଗଲେ ଭଗବାନଙ୍କଠାରେ ଲୀନହୋଇ ରାଧାମୟ ହୋଇଗଲେ । ଷୋଳସହସ୍ର ଗୋପୀ କୃଷ୍ଣଙ୍କ ଅନନ୍ତ ପ୍ରେମରେ ମତୁଆଲ ହୋଇ ପ୍ରତିଦିନ ଷୋଳହଜାର ସୁଚିନ୍ତା ଭଗବାନଙ୍କ ନାମାମୃତ ପାନ କରୁଥିବାରୁ ଏମାନେ ଗୋଟିଏ ଗୋଟିଏ ଗୋପୀପାଲଟି ଗଲେ । ପ୍ରାଣୀର ଯେ ଆଶ୍ରୟ କର୍ତ୍ତା ଚର୍ତୁବର୍ଗ ଫଳପ୍ରାପ୍ତି କରି ମୋକ୍ଷ ପ୍ରଦାନ କରିପାରେ ସେ ହିଁ ଭଗବାନ୍ ଶ୍ରୀକୃଷ୍ଣ, ବିଶ୍ୱବନ୍ଦିତ, ବିଶ୍ୱ ପୂଜନୀୟ, ବ୍ରହ୍ମନ୍, ସୃଷ୍ଟିର ଆଦ୍ୟ ଓଁକାର ଆଦ୍ୟପୁରୁଷ ।

ନାର+ଅୟନ= ନାରାୟଣ । ନର ଜୀବ ସମୂହ ଅୟନ୍- ଆଶ୍ରୟ ଦାତା ହିଁ ଭଗବାନ ପଦବାଚ୍ୟ । ସେ ହିଁ ରାମ, ଯଥା 'ରମ୍ୟତେ ଇତି ରାମ' ଯେଉଁ ପରଂବ୍ରହ୍ମ ଶରୀରସ୍ଥ ଆତ୍ମା ସହିତ ପତି ସ୍ୱରୂପ ରହି ରାଧାକୃଷ୍ଣଙ୍କ ଅନନ୍ତ ପ୍ରେମକୁ ରମଣ କରୁଅଛି ସେ ହିଁ ପରଂବ୍ରହ୍ମ ଆତ୍ମାରାମ ସ୍ୱରୂପ ବିଦ୍ୟମାନ ।

ଶୂନ୍ୟ ଶୂନ୍ୟ ମହାଶୂନ୍ୟ ଶୂନ୍ୟ ମଧେ
ନାରାୟଣ ମଧେ ଜ୍ୟୋତି ଜ୍ୟୋତି ଭଗବାନାୟ ।

ସୃଷ୍ଟିର ଆଦ୍ୟ ଓଁ କାର । ଅ+ଉ+ମ= ବ୍ରହ୍ମା + ବିଷ୍ଣୁ + ମହେଶ୍ୱର । ଅନ୍ୟ ଅର୍ଥରେ ଏହାକୁ ମଧ୍ୟ ଗ୍ରହଣ କରାଯାଏ । ସ୍ୱର୍ଗ+ ମର୍ତ୍ତ୍ୟ+ ପାତାଳ ସର୍ବତ୍ର ଯେ ବିଦ୍ୟମାନ (ଜାଗ୍ରତ) । କାଳ ଯାହାକୁ ଗ୍ରାସ କରିପାରେ ନାହିଁ, ଅଗ୍ନି ଯାହାକୁ ଦହନ କରିବାକୁ ଅସମର୍ଥ ସେ ହିଁ ବ୍ରହ୍ମ । ଏହି ବ୍ରହ୍ମାନ୍ ସତ୍, ଚିତ୍, ଆନନ୍ଦମୟ ବିଶ୍ୱବ୍ୟାପକ ଅଟନ୍ତି, ବ୍ରହ୍ମନ୍‌ର ଆଦି ଅନ୍ତ ନାହିଁ । ସେ ହିଁ ଅନାଦି ରାଧା କୃଷ୍ଣ ଏକ ଭାବେ ବିରାଜିତ ।

ଯୁଗଯୁଗ ଧରି ଯେଉଁ ପରମାତ୍ମାଙ୍କର ଆଖି ଅଛି ଅଥଚ ଆଖିପତା ନାହିଁ, ନାକ ଅଛି ରନ୍ଧ୍ର ନାହିଁ, ପାଟି ଅଛି କିନ୍ତୁ ଗୋଟିଏ ଗାର, ସର୍ବଦା ନିରବ, ବାହୁ ଅଛି ହାତ ନାହିଁ। ଯିଏ ବିଶ୍ୱ ବ୍ରହ୍ମାଣ୍ଡକୁ ନିର୍ମାଣ କଲେ, ସେ ହିଁ ଆଦି ଅନ୍ତ ଗଢ଼ିଦେଲେ। ଏ ବିଶ୍ୱ ରାଧାମୟ କରି, 'ଈଷା ବାସ୍ୟ ମିଦଗଂ ସର୍ବଂଯତ୍ କିଞ୍ଚିତ୍ ଜତତ୍ୟାଂ ଜଗତ।" ଧନ୍ୟ ସେ କାର୍ଯ୍ୟରେ ସମସ୍ତଙ୍କୁ ନିୟୋଜିତ କରି, କର୍ତ୍ତବ୍ୟର ଶ୍ରେଷ୍ଠତା ପ୍ରତିପାଦନ କରି ଏ ଚରାଚର ବିଶ୍ୱକୁ ଏକ ସୂତ୍ରରେ ବାନ୍ଧି ରଖିଛନ୍ତି।

ସୁଖେ ଦୁଃଖେ ସମେ ଯସ୍ୟ ଲାଭା ଲାଭୌ ପରାପରୌ
ରୋଗ ଭୌଗୋଚ ନା ଦ୍ୟନ୍ତୌପର ମାତ୍ମେତି କୀର୍ତ୍ତିତଃ ॥

ଜ୍ଞାନୀ ଅଜ୍ଞାନୀ, ଜାତି ଧର୍ମ, ପରଆପଣା, ସୁଖଃ ଦୁଃଖ, ଲାଭ ହାନୀ, ଭୋଗାଭୋଗ, ଆଦି ଅନ୍ତ ଯାହାଙ୍କଠାରୁ ଖୋଜି ପାଇବା କଷ୍ଟସାଧ ସେ ହିଁ ଜୀବ ପରମ, ରାଧାକୃଷ୍ଣ ଭାବେ ଏକ ଓ ଅଭିନ୍ନ। ସେ ଗଢ଼ିଦେଲେ ଏ ବିଶ୍ୱ ଚରାଚର, ସୃଷ୍ଟି ନିମନ୍ତେ ଅଷ୍ଟ ପ୍ରହରରେ ଏକ ଦିନ, ରାତ୍ରି ମିଶି ଏକ ଅହରାତ୍ର ୧୫ ଆଉ ରାତ୍ରିରେ ଏକପକ୍ଷ, ଶୁକ୍ଲ ପକ୍ଷ ଓ କୃଷ୍ଣପକ୍ଷ ଦୁଇଟି। ଏକ ମାସର ସମାହାରରେ ୧୨ ମାସରେ ଏକ ବର୍ଷ। ୩୬୦ ଦିନରେ ଦେବତାଙ୍କୁ ଏକ ଦିନ। ପୃଥିବୀ ଉତ୍ତରାୟଣ ଓ ଦକ୍ଷିଣାୟନ ଦ୍ୱାରା ଗତି କରି, ଉତ୍ତରାୟଣ ୬ ମାସ ଦେବତାଙ୍କର ଦିନ ଓ ଦକ୍ଷିଣାୟନ ୬ ମାସ ରାତ୍ର। ୩୬୦ ବର୍ଷରେ ଦେବତାଙ୍କର ଏକ ଦିନ। ୧୨,୦୦୦ ଦେବ ବର୍ଷରେ ଏକ ଦେବ ଯୁଗ। ଏହି ଦେବଯୁମ ମାନ ପକ୍ଷରେ ୪୩୨୦୦୦୦ ବର୍ଷ ହୋଇଥାଏ। ଏହା ହିଁ ମହାଯୁଗ। ଏହା ଚାରିଭାଗ। ସତ୍ୟ ଯୁଗ ୧୭୨୮୦୦୦ ବର୍ଷ, ତ୍ରେତୟାଯୁଗ ୧୨୯୬୦୦୦ ବର୍ଷ, ଦ୍ୱାପର ଯୁଗ ୮୬୪୦୦୦ ବର୍ଷ, କଳି ୪୩୨୦୦୦ ବର୍ଷ। ଏକ ଚତୁର୍ଥାଂଶ ଚାରୋଟି ଦେବତାଙ୍କର ୨୦୦୦ ବର୍ଷର ପ୍ରତି ଯୁଗରେ ଭୋଗାନ୍ତେ କ୍ରମାନ୍ୱୟରେ କଟି କଟି ଏହିପରି ଚାରି ଯୁଗ ଭୋଗ ଅଥବା ଚାରି ହଜାର ଯୁଗରେ ବ୍ରହ୍ମାଙ୍କର ଏକ ଦିନ ଭୋଗ ହୋଇଥାଏ। ଚାରିଶତ ଚତ୍ରିଶକୋଟି ବର୍ଷରେ ତାଙ୍କର ଏକ ରାତ୍ର ହୁଏ। ଦିବାନିଶି ଗୋଟିଏ ଅହୋରାତ୍ର। ତାହାକୁ ଦୁଇ କଳ୍ପର ମାନ୍ୟତା ଦେଇ ଏ ବିଶ୍ୱ ବ୍ରହ୍ମାଣ୍ଡକୁ ନିୟନ୍ତ୍ରଣ କରି ସଂଚାଳନ କରୁଛନ୍ତି।

କେନୋପନିଷଦରେ ପ୍ରଶ୍ନ ଥିଲା "କେନେଷିତଃ ପତତି ପ୍ରେକ୍ଷିତଂ ମନଃ" ? ଉତ୍ତର ଥିଲା 'ଶ୍ରେତ୍ରସ୍ୟ ଷ୍ଣୋତ୍ରଂ ମନମୋ ମନୋୟତ୍ ବା ଚୋହି ବାଚଂର ପ୍ରାଣସ୍ୟ ପ୍ରାଣଃ। ଚକ୍ଷୁଶ୍ଚ ଚକ୍ଷୁଃ ଅତି ମୁଚ୍ୟଧୀରା, ପ୍ରେତ୍ୟାସ୍ମାନ ଲୋକଃ ଅକ୍ଷତା ଭବନ୍ତି। ଏହାର ଅର୍ଥ ଆମ ଚକ୍ଷୁ, କାନ, ମନ ଇତ୍ୟାଦି ପଛରେ ଯାହାଙ୍କର ଏଭଳି ଏକ ସୂକ୍ଷ୍ମ ଶକ୍ତି (ବ୍ରହ୍ମ) ରହିଛି ତାହାଙ୍କ ନିର୍ଦ୍ଦେଶରେ ଏ ପ୍ରାଣ ଚାଲିଛି ଏବଂ ଇନ୍ଦ୍ରିୟାଦି ସକ୍ରିୟ

ହୋଇ କାର୍ଯ୍ୟ କରୁଛନ୍ତି । ଆଖି ତାହାକୁ ଦେଖିପାରୁ ନାହିଁ କି ଭାଷାରେ ଏହା ଅବର୍ଣ୍ଣନୀୟ । କେବଳ ଏହାକୁ ଅନୁଭବେନ୍ଦ୍ରିୟ ଭାବରେ ଉପଲବ୍ଧ କରାଯାଇପାରେ ସେ ହିଁ ବ୍ରହ୍ମନ୍ ।

ତଦେ ଜତି ତନ୍ନୈଜତି ତଦ୍ଦୂରେ ତଦ୍ୱନ୍ତିକେ
ତଦନ୍ତରସ୍ୟ ସର୍ବସ୍ୟ ତଦୁ ସର୍ବସ୍ୟାସଃ ବାହ୍ୟତଃ ।।

ବ୍ରହ୍ମନ୍ ଚଳମାନ ଓ ଏହା ମଧ୍ୟ ଅଚଳମାନ । ଦୂରରେ ଥାଏ ପୁନଃ ନିକଟରେ ଥାଏ । ଏହା ସମସ୍ତଙ୍କ ଭିତରେ ଓ ବାହାରେ ପରିପୂର୍ଣ୍ଣ । ଏହାକୁ ବିଜ୍ଞାନ ଓ ଆଧ୍ୟାତ୍ମିକତା ଗ୍ରହଣ କରିଅଛି । ବିଶ୍ୱ ବିଖ୍ୟାତ ବୈଜ୍ଞାନିକ ଆଇନ୍ ଷ୍ଟାଇନ୍ଙ୍କ ଉକ୍ତି ଥିଲା ଭଗବାନ ମନଇଚ୍ଛା ବ୍ରହ୍ମାଣ୍ଡ ତିଆରି କରି ନାହାନ୍ତି । ଏହା ଲକ୍ଷ୍ୟହୀନ ବା ଆକସ୍ମିକ ନୁହେଁ । ଏହି ସମସ୍ତ ସୃଷ୍ଟିର ରହସ୍ୟ ପଛରେ ଏକ ଗୂଢ଼ତତ୍ତ୍ୱ ନିଜନିଜ ପଥରେ ଚାଲିଛନ୍ତି । ଏହାର ନିର୍ମାଣ କର୍ତ୍ତା କିଏ ? ଏମାନେ କାହାର ନିର୍ଦ୍ଦେଶରେ କାର୍ଯ୍ୟରତ । ଶୃଙ୍ଖଳା, ନିୟମ ଓ ସତ୍ୟପଥରେ ପଥିକ ହୋଇ ସଦାସର୍ବଦା ନିଜନିଜ କାର୍ଯ୍ୟରେ ରତ । ଏଣୁ ସୁନିଶ୍ଚିନ୍ତ ଏହା ପଛରେ ଏକ ସତ୍ୟର ଗୂଢ଼ତତ୍ତ୍ୱ ଲୁକ୍କାୟିତ ଅଛି । ଯାହାକୁ ବେଦାନ୍ତ, ଆତ୍ମନ୍ ବା ବ୍ରହ୍ମନ୍ ବୋଲି ଗ୍ରହଣ ବା ବିଶ୍ୱାସ କରେ । ସାଧାରଣତଃ ବୈଷ୍ଣବମାନେ ଏହାକୁ ରାଧାକୃଷ୍ଣଙ୍କ ଲୀଳା ବା ଭଗବାନଙ୍କର ସୃଷ୍ଟି ବୋଲି କହିଥିଲେ ।

ସ୍ୱାମୀ ଚିନ୍ମୟାନନ୍ଦଙ୍କ ମତାନୁସାରେ ଆମେ ସମସ୍ତେ ଭଗବାନଙ୍କଠାରୁ ସମଦୂରତ୍ୱରେ ଅଛନ୍ତି । କିନ୍ତୁ କେତେକ କହନ୍ତି ଆମେ ଭଗବାନଙ୍କ ଅତି ପ୍ରିୟ ପାତ୍ର । ସ୍ୱାମୀ ଚିନ୍ମୟାନନ୍ଦଙ୍କ ଉକ୍ତିରେ ଆମ ମଧ୍ୟରୁ କେତେକ ପରିଧିରେ ଛିଡ଼ା ହୋଇ ଭଗବାନଙ୍କ ଆଡ଼କୁ ମୁହଁ କରିଛନ୍ତି । ଅନ୍ୟ କେତେକ ଲୋକ ବାହାରକୁ ଚାହିଁ ଭଗବାନଙ୍କ ଆଡ଼କୁ ପିଠି ଦେଖାଇ ଛିଡ଼ା ହୋଇଛନ୍ତି । ସତ୍ ସିଦ୍ଧାନ୍ତରେ ଉପନୀତ ହେବାକୁ ହେବ ଯେ ବିବେକାନନ୍ଦ, ରାମକୃଷ୍ଣ ପରମହଂସ, ଭୀମଭୋଇ, ଗୁରୁ ନାନକ ଓ ଚୈତନ୍ୟ ପରି ସାଧୁ ପୁରୁଷମାନେ ସର୍ବଦା ଭଗବାନଙ୍କ କଥା ଚିନ୍ତା କରି ଈଶ୍ୱରଙ୍କ ନିକଟତର ହୋଇପାରିଥିଲେ । କିନ୍ତୁ ଆମ୍ଭେ ବାହ୍ୟ ଚାକଚକ୍ୟ ଜଗତର ବଶବର୍ତ୍ତୀ ହୋଇ ସଦା ଅନ୍ୟାୟ ହିଂସା ଦ୍ୱେଷରେ ରହି କଷ୍ଟର ଯାତନା ଭୋଗୁଛନ୍ତି । ପ୍ରକୃତ ଆନନ୍ଦର ସ୍ୱାଦ ଚାଖିବାରୁ ବଞ୍ଚିତ ହେଉଛନ୍ତି । କାରଣ ସୁଖ ପରି ଅମୂଲ୍ୟ ପଦାର୍ଥ ବାହ୍ୟଜଗତରୁ ଗ୍ରହଣ କରାଯାଏ । ସୁମିଷ୍ଟ ଖାଦ୍ୟ, ଫୁଲର କୋମଳତା ଆମକୁ ପ୍ରଭାବିତ କଲାପରି ଶାନ୍ତି ଓ ତୃପ୍ତି ଦେଇ ମନକୁ ଯେପରି ଶାନ୍ତ କରାଯାଏ ଠିକ୍ ଅନ୍ତରର ଭିତରେ ସୁଖର ଉତ୍ସ ପ୍ରବାହିତ ହେଉଥାଏ । ଏହାକୁ ଆସନ ବା ବ୍ରହ୍ମନ୍ କୁହାଯାଇପାରେ । ଆମ ସମସ୍ତଙ୍କ ଅନ୍ତର ଆତ୍ମାରେ ଅଛି ଆନନ୍ଦର ଉତ୍ସ । ବାହାର ଅଛି ରାଗ, ଈର୍ଷା, ଦ୍ୱେଷ ଆଦି ଦୁର୍ଗୁଣ । ବାହ୍ୟଜଗତରୁ ଅନ୍ତର୍ଜଗତକୁ ପ୍ରବେଶ କରି

ଆନନ୍ଦର ଉତ୍ସକୁ ଗ୍ରହଣ କରିବା ସମସ୍ତ ମାନବ ଜୀବନର ମୂଳ ଲକ୍ଷ୍ୟ ହେବା ବିଧେୟ । ଶ୍ରୀ ଶ୍ରୀ ରବିଶଙ୍କରଙ୍କ ମତରେ, ଆଧ୍ୟାତ୍ମିକତା ଯଦି କଦଳୀ ଭିତର ଧର୍ମ ହେଲା କଦଳୀର ଚୋପା ସଦୃଶ ଆମେ ସବୁ ଅନ୍ତର୍ନିହିତ ମର୍ମକୁ (ଆଧ୍ୟାତ୍ମିକତା) ନବୁଝି ଚୋପାକୁ (ଧର୍ମ) ଧରି ପରସ୍ପର ଭିତରେ କାଦୁଅ ଫିଙ୍ଗାଫିଙ୍ଗି ହୋଇ ଈଶ୍ୱରଙ୍କ ମହାନ ସୃଷ୍ଟିକୁ ଅବମାନନା କରି ଚାଲିଥାଉ । କିନ୍ତୁ ଏହା ମାନବ ଜାତି ପାଇଁ ଶୁଭଙ୍କର ନୁହେଁ । ଆମ୍ଭମାନଙ୍କଠାରେ ଅନନ୍ତ ପ୍ରେମର ଜାଗରଣ ଜାଗ୍ରତ ହେବ ନିତାନ୍ତ ଜରୁରୀ । ଶାରୀରିକ, ଦହିକ ପ୍ରେମ, ପାପ ପଙ୍କିଳ ସଦୃଶ ଆଜି ଆମ୍ଭମାନଙ୍କଠାରେ ଆତ୍ମଜ୍ଞାନର ବିକାଶ ହେବା ବିଧେୟ । ବିଜ୍ଞାନର ବହୁବିଧ ବିକାଶରେ ଆତ୍ମଜ୍ଞାନର ଅଭାବରେ ଏ ବିଶ୍ୱବ୍ରହ୍ମାଣ୍ଡ ଧ୍ୱଂସାବିମୁଖୀ ହେବାରେ ଲାଗିଛି । ଏଣୁ ହେ ମହାମାନବ, ରାଧାକୃଷ୍ଣଙ୍କ ସୂକ୍ଷ୍ମାଦିସୂକ୍ଷ୍ମ ଅନନ୍ତ ପ୍ରେମକୁ ଜାଗରିତ କରିବାକୁ ହେଲେ ସତ୍ୟ, ଧର୍ମ ଓ ସତ୍‌ବଚନର ଆଶ୍ରିତ ହେବାକୁ ପଡ଼ିବ । ତେବେ ଜୀବ ଓ ପରମଙ୍କ ଭେଟ କେତେ ବା ନିକଟ ?

ଜ୍ଞାୟତେ ଚାତ୍ମନୋ ଭାବସ୍ତଦାତ୍ମଜ୍ଞାନ ମୁଖ୍ୟତେ
ତଦାତ୍ମଜ୍ଞାନ ଯୋଗୋ ନ ଯୂକ୍ଷ୍ମବ୍ରହ୍ମୈବ ଦୃଶ୍ୟତେ ॥

ରାଧା ପ୍ରକୃତି ସ୍ୱରୂପା, କୃଷ୍ଣ ପୁରୁଷ ଅଟନ୍ତି । ପ୍ରକୃତି ବ୍ୟତିରେକ ପୁରୁଷ ପଂଗୁ ଅଥର୍ବ । ପ୍ରକୃତି ବିନା ପୁରୁଷର ଲୀଳା ଖେଳା ଅସମ୍ଭବ । ପ୍ରେମର ପୂଜାରୀ ପ୍ରେମ ପ୍ରତିମୂର୍ତ୍ତି ଶ୍ରୀରାଧା, ଶ୍ରୀକୃଷ୍ଣଙ୍କ ପ୍ରାଣେଶ୍ୱରୀ, ରାସେଶ୍ୱରୀ, ନିତ୍ୟ ଗୋଲେକେଶ୍ୱରୀ ପରି ଆରାଧ୍ୟା ରାଜାରାଜେଶ୍ୱରୀ, ସର୍ବଗୁଣସଂପନ୍ନ, ସର୍ବବ୍ୟାପକ, ନିତ୍ୟନୂତନ ଅନନ୍ତ ପ୍ରେମରେ ଆତ୍ମପ୍ରକାଶ କରି ବିଶ୍ୱ ବ୍ରହ୍ମାଣ୍ଡରେ ବିଚରଣ କରୁଥିବା ସର୍ବପ୍ରାଣୀଙ୍କର ହିତସାଧନ କରୁଥିବା ଯୁଗଳ ପ୍ରେମୀ ବାହୁପ୍ରସାରୀ ଭକ୍ତଜନମାନଙ୍କୁ ନିଜ କୋଳରେ କୋଳାୟିତ କରିବା ପାଇଁ ସର୍ବଦା ଜାଗ୍ରତ ।

ତୁ ରାଧା ଜୀବ ମୋର ଦେହୀ । ମୁଁ ତୋ'ର ପରମ ଅଟଇ
ସର୍ବ ପୂର୍ଣ୍ଣଙ୍କ ପୁଣ୍ୟରସ । ଯେ ଚାରି କଳାରୁ ପ୍ରକାଶ ॥
(ପ୍ରେମଭକ୍ତି ବ୍ରହ୍ମଗୀତା)

ଶ୍ରୀରାଧା କୃଷ୍ଣ ବେନି ଜନ । ଜୀବ ପରମ ରୂପ ଜାଣ
ଜୀବଟି ରାଧା ଅଂଗ ହୋଇ । ପରମ କୃଷ୍ଣ ଅଂଗେ ସେହି ॥
(ଶିଶୁ ଅନନ୍ତ)



# ଜ୍ଞାନର ଭଣ୍ଡାର ବେଦ

ବେଦକୁ ସର୍ବପ୍ରାଚୀନ ଗ୍ରନ୍ଥ ଭାବରେ ଗ୍ରହଣ କରାଯାଏ । ବେଦର ଅର୍ଥ ଜ୍ଞାନ । ବେଦର ଅୟମାରମ୍ଭ କେବେ ଗଣନା କରିବା ଅସମ୍ଭବ । ବେଦର ବାକ୍ୟଗୁଡ଼ିକ ସର୍ବଶ୍ରେଷ୍ଠ ମନ୍ତ୍ର ଭାବରେ ଗ୍ରହଣ କରାଯାଏ । ମନ୍ତ୍ରକୁ ମନନଯୋଗ ମଧ୍ୟ କୁହାଯାଏ । ଏହା ଶ୍ରୁତି ଶ୍ରବଣରୁ ପ୍ରାପ୍ତ । ମାନବ ଜୀବନକୁ ଉନ୍ନତିରୁ ଉନ୍ନତି ପଥରେ ଅଗ୍ରସର କରାଇବା ବେଦର ମହାନ୍ ଉଦ୍ଦେଶ୍ୟ । ମୁନିଋଷିମାନେ ମନ୍ତ୍ର ଦ୍ରଷ୍ଟା । ଏମାନଙ୍କ ମଧ୍ୟରେ ମୁଖ୍ୟତଃ ନାରଦ, ମନୁ, ଶ୍ରୁସ୍ତ, ଭୃଗୁ, ଅଂଗୀରା, ଅତ୍ରି, ବଶିଷ୍ଠ, ବିଶ୍ୱାମିତ୍ର, ବୈବସ୍ୱତଃ, କାମଦେବ, କଶ୍ୟପ, ଭରଦ୍ୱାଜ, ମଦ, କୁକ୍ଷବାନ, ଗୌତମ, ମଧୁଛନ୍ଦା, କଣ୍ୱ, ଶିବି, ଔସନର ଆଦି ସର୍ବଶ୍ରେଷ୍ଠ ମହାନ ସାଧକ ଅଟନ୍ତି । ମନ୍ତ୍ରଦ୍ରଷ୍ଟା ଋଷିକା ଭାବେ ରୋଶମା, ଶ୍ରଦ୍ଧା, ଲୋପାମୁଦ୍ରା, ଅପାଲା, ଘୋଷା, ଯମି, ଦାକ୍ଷିଣା, ସୂର୍ଯ୍ୟା, ଉର୍ବଶୀ, ଇନ୍ଦ୍ରାଣୀ ଆଦି ପ୍ରଧାନ ଅଟନ୍ତି ।

ବେଦକୁ ସାଧାରଣତଃ ଚାରି ଭାଗରେ ବିଭକ୍ତ କରାଯାଇଛି । ଋକ୍‌ବେଦ, ଯର୍ଜୁବେଦ, ସାମବେଦ ଓ ଅଥର୍ବବେଦ । ଏହାଛଡ଼ା ଶିଶୁ ବେଦକୁ ପଂଚମ ଗୁପ୍ତ ବେଦ କୁହାଯାଏ । ପ୍ରଥମ ତିନୋଟିଯାକ ବେଦକୁ ତ୍ରୟୀ ବିଦ୍ୟା ବୋଲି ଧରାଯାଏ । କାରଣ ଏଥିରେ ତିନି ପବିତ୍ର ବିଜ୍ଞାନ ପରିପୂର୍ଣ୍ଣ ଭାବରେ ରହିଛି । ଏହା ସ୍ତୁତିଗାନ ଆବୃତ୍ତି, ତ୍ୟାଗ କାର୍ଯ୍ୟକାରିତା ଓ ମନ୍ତ୍ର ଉଚ୍ଚାରଣର ସମାହାର । ଦେଖିବାକୁ ଗଲେ ଋକ୍‌ବେଦ, ଯର୍ଜୁବେଦ ଓ ସାମବେଦରେ ଏହି ତିନୋଟି ପ୍ରକ୍ରିୟାର ସଂଗମ ଘଟିଛି । ବେଦରେ ଲିପିବଦ୍ଧ ହୋଇଥିବା ମନ୍ତ୍ର ଶୁଦ୍ଧପୂତ ଓ ଗୁରୁତ୍ୱପୂର୍ଣ୍ଣ । ପ୍ରତି ବେଦ ଛନ୍ଦୋମୟ ତାଳମୟ ବିଶିଷ୍ଟ ମନ୍ତ୍ର ଓ ସଂହିତାରେ ପରିପୂର୍ଣ୍ଣ । ସଂହିତାର ବ୍ରାହ୍ମଣ ଭାଗରେ ପୂଜା, ଉତ୍ସବ ପାଳନ ଉପରେ ଗୁରୁତ୍ୱ ଦିଆଯାଇଛି । କର୍ମକାଣ୍ଡ, ମନ୍ତ୍ର, ପୌରାଣିକ କିମ୍ବଦନ୍ତୀ ଓ ବିଭିନ୍ନ ବିଧିବିଧାନର ସନ୍ମିଶ୍ରଣରେ ପର୍ଯ୍ୟବସିତ ସମଷ୍ଟିକୁ ଶ୍ରୁତି ଭାବରେ ଗ୍ରହଣ କରାଯାଏ ।

ବେଦ ଏକ ଓ ଅଭିନ୍ନ । ଏହା ସର୍ବଶ୍ରେଷ୍ଠ ଦିଗ୍‌ଦର୍ଶକ । ବେଦକୁ ଶ୍ରବଣ ଦ୍ୱାରା ପ୍ରାପ୍ତ ହେବା ହେତୁ ଏହାକୁ ଶ୍ରୁତି ବୋଲାଯାଏ । ଏହା ଗୁରୁଶିଷ୍ୟ ପରମ୍ପରାର ଓ ପିତାପୁତ୍ର ପରମ୍ପରାର ଏକ ପବିତ୍ର ବନ୍ଧନ । ମୁଖ୍ୟତଃ ଶିଷ୍ୟ ପରମ୍ପରା ସମାଜରେ ପ୍ରଚଳିତ ହୋଇ ଆସିଥିବାରୁ ଓ ସୂକ୍ତ ପରମ୍ପରା ସର୍ବଜନ ଆଦୃତ ହୋଇଥିବା ହେତୁ ମହର୍ଷି ବେଦବ୍ୟାସ ଏହାକୁ ଋକ୍‌ବେଦ, ସାମବେଦ, ଯର୍ଜୁବେଦ ଓ ଅଥର୍ବବେଦ ଭାବରେ ବାଖ୍ୟା କରିଥିଲେ । ଏଥିରେ ମଣ୍ଡଳ, ସ୍ୱକ୍ତି, ମନ୍ତ୍ର ଓ ଅଧ୍ୟାୟ ସନ୍ନିବେଶିତ ।

ଋଷିଗଣଙ୍କର ତପସ୍ୟା ଓ ଘୋର ସାଧନା ଦ୍ୱାରା ଅମୃତ ତୁଲ୍ୟ ମହାନ୍ ବାଣୀ ପ୍ରକଟିତ ହେଲା, ତାହା ମନ୍ତ୍ର ଭାବରେ ଖ୍ୟାତ । ଏହି ମନ୍ତ୍ର ସାଧାରଣତଃ ପଦ୍ୟା ପଦ୍ୟ ଓ ସଂଗୀତ ଭାବରେ ଛନ୍ଦ ରୂପରେ ପ୍ରକାଶିତ । ଏହାକୁ ବେଦତ୍ରୟୀ ବୋଲି ଧରାଗଲା ।

ଋକ୍‌ବେଦ ସର୍ବପ୍ରାଚୀନ ମୂଳଗ୍ରନ୍ଥ । ଏଥିରେ ୧୦ ମଣ୍ଡଳ, ୬୪ ଅଧ୍ୟାୟ, ୧୦୨୮ ସୂକ୍ତି ଏବଂ ୧୦୫୫୫ ମନ୍ତ୍ର ରହିଥିବାବେଳେ ଯର୍ଜୁବେଦରେ ୪୦ଟି ଅଧ୍ୟାୟ ୩୦୩ଟି ଅନୁବାଦ ଓ ୧୯୭୫ଟି ମନ୍ତ୍ର ରହିଅଛି । କିନ୍ତୁ ଏହାକୁ ଦୁଇଭାଗରେ ବିଭକ୍ତ କରାଯାଏ- ଶୁକ୍ଳ ଯର୍ଜୁବେଦ ଓ କୃଷ୍ଣ ଯର୍ଜୁବେଦ । ସାମବେଦରେ ୭୫ଟି ମନ୍ତ୍ର ୧୮୦୦ଟି ପୁନରୁକ୍ତି ସହିତ ଅନ୍ୟବେଦଗୁଡ଼ିକରେ ଯେଉଁ ମନ୍ତ୍ର ସଂଗୀତମୟ ସେଗୁଡ଼ିକୁ ଏଥିରେ ମଧ୍ୟ ଦେଖିବାକୁ ମିଳେ । ଅଥର୍ବ ବେଦରେ ୨୦ଟି କାଣ୍ଡ ୭୩୨ଟି ସୂକ୍ତି, ୫୯୭୭ଟି ମନ୍ତ୍ର ଗଚ୍ଛିତ ରହିଅଛି । ଋକ୍‌ବେଦକୁ ଜ୍ଞାନକାଣ୍ଡ, ଯର୍ଜୁବେଦକୁ କର୍ମକାଣ୍ଡ, ସାମବେଦକୁ ଉପାସନାକାଣ୍ଡ ଓ ଅଥର୍ବ ବେଦକୁ ବିଜ୍ଞାନକାଣ୍ଡ ବୋଲି କୁହାଯାଏ ।

ପ୍ରାଚୀନତମ ଶିଶୁବେଦର ରଚୟିତା ଗୋରେଖ ନାଥ ବୋଲି ଧରାଯାଏ । ୨୫ଟି ଶ୍ଳୋକ ଦ୍ୱାରା ଏହି ଗ୍ରନ୍ଥ ରଚିତ । ଏହା ଗୁପ୍ତ ପଂଚମ ବେଦ ଭାବରେ ଖ୍ୟାତ । ଏହାର ସ୍ରଷ୍ଟା ଶିବଶଙ୍କର । ସୁଷୁମ୍ନା ନାଡ଼ୀର ସହଯୋଗରେ ନାଥସିଦ୍ଧି ଯୋଗୀମାନେ ଯୋଗରେ ରତ ରୁହନ୍ତି । ଏହି ଯୋଗସାଧନ ଦ୍ୱାରା ଯେଉଁ ତତ୍ତ୍ୱ ସମ୍ଭୂତ ହୁଏ ତାହା ଶାସ୍ତ୍ର ସିଦ୍ଧ ନିୟମଗୁଡ଼ିକୁ ସୁଷୁମ୍ନା ବେଦ ବା ଶିଶୁବେଦ ବୋଲି ଧରିନିଅନ୍ତି । କିନ୍ତୁ ଶିଶୁ ଶବ୍ଦ ସୁଷୁମ୍ନା ଶବ୍ଦର ଅପଭ୍ରଂଶ ଅଟେ । ଏଣୁ ସୁଷୁମ୍ନା ଶବ୍ଦରୁ ଶିଶୁ ଶବ୍ଦର ସୃଷ୍ଟି । ଶିଶୁବେଦ ଉଭୟ ପଦ୍ୟ ଓ ଗଦ୍ୟ ଦ୍ୱାରା ରଚିତ । ଏହି ବେଦକୁ ସାଧନ କଲେ ଚିତ୍ତ ସ୍ଥିର ରହେ ଓ ମୋକ୍ଷ ପ୍ରାପ୍ତି ମିଳେ । ଶିଶୁବେଦର ସ୍ଥାନ ତ୍ରିକୁଟରେ ବା ଭ୍ରୂଲତା ମଧ୍ୟବର୍ତ୍ତୀ ସ୍ଥାନରେ । ଏଠି ପରମବ୍ରହ୍ମ ବିରାଜିତ । ବଳରାମ ଦାସଙ୍କ ମତରେ ଗତି ଓ ମୁକ୍ତିର ମାର୍ଗ ଶିଶୁବେଦ । ନାସାରେ ଋକ୍‌ବେଦ, କର୍ଣ୍ଣରେ ଯର୍ଜୁବେଦ, ମୁଖରେ ସାମବେଦ, ନୟନରେ ଅଥର୍ବବେଦର ସ୍ଥାନ ଥିବା ସ୍ଥଳେ ଏହି ଚାରିବେଦଙ୍କର ଶିର ଅଗ୍ରେ ନିରାକାର ବ୍ରହ୍ମଙ୍କର ସ୍ଥାନ । ଏହିଠାରେ ହିଁ ଶିଶୁବେଦର ବସତି ।

ପୁରାତନ ମନ୍ତ୍ରର ସମାହାର ଯର୍ଜୁବେଦ । ଯାହାର ପଂକ୍ତିଗୁଡ଼ିକ ଋକ୍‌ବେଦରୁ ସଂଗୃହୀତ । ଏହା କର୍ମୋପଯୋଗୀ ଅଟେ । ପ୍ରତ୍ୟେକ ମନ୍ତ୍ର ତ୍ୟାଗକୁ ଅନୁସରଣ କରେ । ଯର୍ଜୁବେଦରେ ଦୁଇଟି ସଂସ୍କରଣ ଦେଖିବାକୁ ମିଳେ । ଯଥା- ଶୁକ୍ଳ ଯର୍ଜୁବେଦ- ସଂହିତା ବ୍ରାହ୍ମଣଙ୍କର । ଏହା ପୃଥକ ଓ କୃଷ୍ଣ ଯର୍ଜୁବେଦ ବ୍ରାହ୍ମଣ ବ୍ୟଖ୍ୟା ସହ ସଂହିତାକୁ ପୃଥକ କରିଥାଏ । କୃଷ୍ଣ ଯର୍ଜୁବେଦରେ କେତୋଟି ସଂସ୍କରଣ ଅଛି; ତାହା ମୈତ୍ରୟାନୀ, କଥା, କପିଳସ୍ଥ ଓ ତୈତ୍ରିୟା ଆଦି । ସାମବେଦ ମଧୁର ସଂଗୀତ ସ୍ୱର, ତାଳ ଓ ସ୍ତବ ଉପରେ ଗୁରୁତ୍ୱ ଦେଇଥାଏ । ଏଥିରେ ଦୁଇଟି ସଂସ୍କରଣ ରହିଅଛି । ଯଥା- କୌଥୁମ୍,

ଜୈମିନିୟା, ଏହା ଉପାସନା ପଦ୍ଧତିର ସୁମାର୍ଗ ପ୍ରଦର୍ଶକ ।

ଅଥର୍ବବେଦ ଅଙ୍ଗୀରସ ଭାବେ ଖ୍ୟାତ । ଏଥିରେ ଋକ୍‌ବେଦ ଓ ଅଥର୍ବବେଦର ସମାହାର ଦେଖିବାକୁ ମିଳେ । ଏହାର ସମସ୍ତ ପଂକ୍ତି ଛନ୍ଦମୟ ଅଟେ । କେତେକ ମଧ୍ୟ ପ୍ରବନ୍ଧ ଭାବେ ଲିପିବଦ୍ଧ । ଏଥିରେ ଅଛି ପୌପାଲାଦି ଓ ସୌନିକ ନାମକ ଦୁଇଟି ସଂସ୍କରଣ । ପ୍ରଥମ ବିଭାଗଟି ବିମୋହନ ଶକ୍ତି, ମନ୍ତ୍ର ଉଚ୍ଚାରଣ ଦୈତ୍ୟ ଓ ବିପର୍ଯ୍ୟୟରୁ ରକ୍ଷା ଓ ଦୀର୍ଘ ନିରାମୟ ସୁସ୍ଥ ଜୀବନ ଧାରଣ ଉପରେ ପର୍ଯ୍ୟବସିତ । ଦ୍ୱିତୀୟ ବିଭାଗ ଚିନ୍ତା ଓ ଦାର୍ଶନିକ ସ୍ତୁତି ଗାନ ଉପରେ ଆଧାରିତ । ଅଥର୍ବବେଦ ତ୍ୟାଗର ସଂକେତ । ମଣିଷର ଜ୍ଞାନ ବେଦର ସମକକ୍ଷ ନୁହେଁ । ବେଦ ପରିବ୍ୟାପକ । ବିଶ୍ୱ ବ୍ରହ୍ମାଣ୍ଡ ସମସ୍ତ ମାନବ ଆତ୍ମସଂଯମ ରକ୍ଷାକରି ଶାନ୍ତି, ମୈତ୍ରୀ, ପ୍ରୀତି ମାଧ୍ୟମରେ ଜୀବନଯାପନ କରିବା ବେଦର ମହାନ ବାଣୀ ।

ବେଦ କହେ, ଆତ୍ମା, ପରମାତ୍ମା ଓ ପ୍ରକୃତିକୁ ନେଇ ଏ ଚରାଚର ସୃଷ୍ଟିର ପରିକଳ୍ପନା । ଏହା ଚିରନ୍ତନ ସତ୍ୟ ଓ ଶାଶ୍ୱତ । ଏହି ତିନୋଟି ପଦାର୍ଥ ସତ୍ୟ, ନିତ୍ୟ ଓ ଭିନ୍ନ । ପରମାତ୍ମା ଆତ୍ମା ନୁହେଁ । ଆତ୍ମା ପ୍ରକୃତି ନୁହେଁ ବା ପ୍ରକୃତି ପରମାତ୍ମା ନୁହେଁ । ଏଣୁ ଜୀବ ବ୍ରହ୍ମ ନୁହେଁ । କାରଣ ବ୍ରହ୍ମ ସର୍ବଜ୍ଞ ହେଲେ ଜୀବନ ଅଳ୍ପଜ୍ଞ ଓ ପ୍ରକୃତି ଅଜ୍ଞ । ପରମାତ୍ମା ସାକ୍ଷୀ ରୂପେ ବିଦ୍ୟମାନ । ପ୍ରକୃତି ବିନା ପରମାତ୍ମା ସୃଷ୍ଟିର କଳ୍ପନା କରାଯାଇନପାରେ । ବ୍ରହ୍ମ ସର୍ବ ବ୍ୟାପକ । ବ୍ରହ୍ମ ଅବତାର ଗ୍ରହଣ କରନ୍ତି ନାହିଁ । ତାଙ୍କର କୌଣସି ମୂର୍ତ୍ତି, ଚିତ୍ରପଟ୍ଟ ବା ତୈଳଚିତ୍ରର ପରିକଳ୍ପନା କରାଯାଇ ନପାରେ ।

ଦୁର୍ଲଭ ମନୁଷ୍ୟ ଜନ୍ମର ସାର୍ଥକତା ପାଇଁ ଜୀବନରେ ଧର୍ମ, ଅର୍ଥ., କାମ, ମୋକ୍ଷ ନିତାନ୍ତ ଜରୁରୀ । ଏସବୁ ଗୁଣ ବେଦାଙ୍ଗରୁ ମିଳିଥାଏ । ଶିକ୍ଷା, କଳ୍ପ, ବ୍ୟାକଣ, ଛନ୍ଦ ନିରୁକ୍ତ ଓ ଜ୍ୟୋତିଷ ଶିକ୍ଷାର ଅର୍ଥ ଉପରେ ପର୍ଯ୍ୟବେସିତ । ଯେ ସତ୍‌ଜ୍ଞାନରେ ବିକଶିତ ସେ ହିଁ ସତ୍‌ଶିକ୍ଷାର ଅଧିକାରୀ । ସାଧାରଣତଃ ଜ୍ଞାନର ପରିସର ଆମେ ସ୍କୁଲ ଓ କଲେଜରୁ ପାଇଥାଉ । ଯିଏ ଯେତେ ପ୍ରମାଣପତ୍ର ସଂଗ୍ରହ କରିପାରେ ଆମେ ତାକୁ ସେତେ ଜ୍ଞାନୀ ଓ ପଣ୍ଡିତରେ ଗଣ୍ୟ କରୁ । ବାସ୍ତବ କ୍ଷେତ୍ରରେ ତାହା ଭୁଲ୍ । ଯେ ଜ୍ଞାନୀ ସେ ଆଧ୍ୟାତ୍ମିକ କ୍ଷେତ୍ରରେ ତତ୍ତ୍ୱଜ୍ଞାନୀ । ସେ ପଣ୍ଡିତ ପଦବାଚ୍ୟ । ଜୀବନର ପ୍ରକୃତ ଉଦ୍ଦେଶ୍ୟ ସ୍ୱରୂପ ଓ ସଦ୍‌ଉପଯୋଗ ବିଷୟରେ ଯାହାର ଦିବ୍ୟଜ୍ଞାନ ପରିବ୍ୟାପକ ସେ ହିଁ ତତ୍ତ୍ୱଜ୍ଞାନୀ । ପ୍ରତ୍ୟେକ ମନୁଷ୍ୟ କର୍ମମୟ ଜୀବନରେ ସତ୍‌କର୍ମ ଓ ବ୍ରହ୍ମଚର୍ଯ୍ୟକୁ ପାଳନ କରି ଈଶ୍ୱରଙ୍କୁ ଉପାସନା କରିବା ବିଧେୟ । ଏହା ହିଁ ବ୍ରହ୍ମଯଜ୍ଞ- ଦେବଯଜ୍ଞା ପ୍ରଭାତ ଓ ସନ୍ଧ୍ୟା ପୂର୍ବରୁ ସପରିବାର ଏକତ୍ର ଯଜ୍ଞାଗ୍ନି ସ୍ଥାପନ କରିବା ବିଧେୟ । ପିତୃଯଜ୍ଞ ଅର୍ଥାତ୍ ଜୀବିତ ପିତାମାତାଙ୍କ ସେବା ସୁଶ୍ରୁଷା କରିବା ଓ ଶ୍ରଦ୍ଧା ସହ ଶ୍ରାଦ୍ଧ କରିବା ବିଧେୟ । ଅତିଥି ଯଜ୍ଞ- ଗୃହସ୍ଥଙ୍କ ପାଖକୁ ବିଦ୍ୱାନ, ସନ୍ନ୍ୟାସୀ, ବାନପ୍ରସ୍ଥ ଓ

ବ୍ରହ୍ମଚାରୀ ସମସ୍ତେ ଆସୁଥିଲେ ସେମାନଙ୍କୁ ଗୃହୀମାନେ ଆତିଥ୍ୟ ଦେବା ସହ ଭୋଜନ ପାନୀୟ ଦେଇ ଆପ୍ୟାୟିତ କରିବା ବିଧେୟ । ବଳୀ ବୈଶ୍ୱଦେବ ଯଜ୍ଞ- ଏଥିରେ ଅସହାୟ ଦୁର୍ବଳ ନିରାଶ୍ରୟ ପ୍ରାଣୀମାନଙ୍କର ମଂଗଳ ବିଧାନ କରାଯାଏ । ଖାଦ୍ୟ ଗ୍ରହଣ ପୂର୍ବରୁ ଗାଈ, ବିଲେଇ, କୁକୁର ଓ କାଉ ଇତ୍ୟାଦିଙ୍କୁ ଶ୍ରଦ୍ଧାର ସହ ଭୋଜନ ଦିଆଯାଉଥିଲେ ଓ ପ୍ରାଣୀମାନଙ୍କ ପ୍ରତି ଦୟା ପ୍ରଦର୍ଶନ କରାଗଲେ ତାହାକୁ ଭୂତଯଜ୍ଞ କୁହାଯାଏ । ଏହି ସୁକର୍ମଗୁଡ଼ିକ କରିବା ପାଇଁ ବେଦରେ ମୁନିଋଷିମାନେ ନିର୍ଦ୍ଦେଶ ଦେଇଯାଇଛନ୍ତି । ଏହାଦ୍ୱାରା ନିଜର ମଂଗଳ ହେବା ସହ ଦେଶ ଓ ଜାତିର ମଂଗଳ ମଧ୍ୟ ହେବ ।

ଉପବେଦର ସାଂକେତିକ ଅର୍ଥ ବ୍ୟବହୃତ ଜ୍ଞାନ । ଚରଣ ବ୍ୟୁହ ଚାରୋଟି ଉପବେଦ ବିଷୟରେ ବର୍ଣ୍ଣନା କରିଛନ୍ତି । ଧନୁର୍ବେଦ, ସ୍ଥାପତ୍ୟବେଦ, ଗନ୍ଧର୍ବବେଦ ଓ ଆୟୁର୍ବେଦ । କେତେକ ମଧ୍ୟ ନାଟ୍ୟଶାସ୍ତ୍ର, ମହାଭାରତ ଓ କେତେଗୁଡ଼ିଏ ପୁରାଣକୁ ନେଇ ପଂଚମ ବେଦର ପରିକଳ୍ପନା କରିଥାନ୍ତି । ବେଦ ଯୁଗେ ଯୁଗେ ଅଜର, ଅମର ଓ ମାନବର ପଥପ୍ରଦର୍ଶକ ।

ବୈଦିକ ଯୁଗରେ ମନୁଷ୍ୟର ଆୟୁଷ ଶହେ ବର୍ଷ ଥିଲା । ଏଣୁ ମନୁଷ୍ୟ ପଚିଶ ବର୍ଷ ବ୍ରହ୍ମଚର୍ଯ୍ୟାଶ୍ରମ, ପଚିଶ ବର୍ଷ ଗୃହସ୍ଥାଶ୍ରମ, ପଚିଶ ବର୍ଷ ବାନପ୍ରସ୍ଥ ଆଶ୍ରମ ଓ ଶେଷ ପଚିଶ ବର୍ଷ ସନ୍ନ୍ୟାସାଶ୍ରମରେ ସମୟ ଅତିବାହିତ କରୁଥିଲା । ଶୃଙ୍ଖଳିତ ସମାଜ ପରିଚାଳନା ପାଇଁ ଚାରିବର୍ଣ୍ଣର ଲୋକ ବସବାସ କରୁଥିଲେ । ଏମାନଙ୍କୁ ନେଇ ସମାଜ ପରିଚାଳନା ଥିଲା । ବିଦ୍ୟା ଦ୍ୱାରା ବ୍ରାହ୍ମଣ, ବଳ ଦ୍ୱାରା କ୍ଷତ୍ରିୟ, ଅନ୍ନ ଦ୍ୱାରା ବୈଶ୍ୟ ଏବଂ ଶୁଦ୍ର ଦ୍ୱାରା ସେବାକାର୍ଯ୍ୟ ଚାଳିତ ହେବା ଫଳରେ ସମାଜ ସୁପଥଗାମୀ ଥିଲା । ଚରଣବେଦ ହିଁ ସମସ୍ତଙ୍କ ପାଇଁ ଆଇନର ମାନଦଣ୍ଡ ଥିଲା । ଯେ ବେଦର ଆଇନ ବିରୁଦ୍ଧାଚରଣ କରୁଥିଲା ସେ ନର୍କଗାମୀ ହେବ ବୋଲି ଭୟ ଥିଲା । ତେଣୁ ସୁପଥଗାମୀ ହେବା ପାଇଁ ବେଦ କାର୍ଯ୍ୟକାରୀ କରୁଥିଲା ।

ତାମିସ୍ର ଅନ୍ଧତାମିସ୍ର ରୌରବ ମହାରୌରବ କୁମ୍ଭୀପାକ କାଳସୂତ୍ର
ଅସିପତ୍ର ବନ, ଶୂକର ମୁଖ ଅନ୍ଧକୂପ କୃମି ଭୋଜନ ସଦଂଶ
ତପ୍ତଭୂମି ବଜ୍ରକଣ୍ଟକ ଶାଲ୍ମଳୀ ବୈତରଣୀ ପୂୟୋଦ
ପ୍ରାଣରୋଧ ବିଶସନ ଲାଳଭକ୍ଷ ସାରମେୟାଦନ ଅବୀଚି
ଅୟପାନ କ୍ଷାରକଦମ ରକ୍ଷୋଗଣ ଭୋଜନ ଶୂଳପ୍ରୋତ
ବନ୍ଦଶୂକ ବଟରୋଧନ ପର୍ଯ୍ୟାବର୍ତ୍ତନ ସୂଚୀମୂଖର
"ବେଦ ବ୍ରହ୍ମମନ୍ତ୍ର ନମସ୍ତୁତେ ।"



# ଲିଙ୍ଗେଶ୍ୱର ଶ୍ରୀ ମହାଦେବଙ୍କ ଉପାସନା

ଧ୍ୟାୟେନିତ୍ୟଂ ମହେଶଂ
ରଜତଗିରିନିଭଂ ଗୁରୁଚନ୍ଦ୍ରାବତଂ ସଂ
ରତ୍ନା କଳ୍ପୋ ଜ୍ୱାଳାଙ୍ଗ
ପରଶୁ ମୃଗ ବରାଭୀତି ହସ୍ତଂ ପ୍ରସନ୍ନଂ
ପଦ୍ମାସୀନଂ
ସମନ୍ତାତ୍ ସ୍ତୁତମ ମରଗଣୈ ବ୍ୟାଘ୍ର କୃର୍ତ୍ତିମ୍ ସାନଂ ।
ବିଶ୍ୱାଦ୍ୟଂ ବିଶ୍ୱବନ୍ଦ୍ୟଂ
ନିଖିଳ ଭୟହରଂ ପଂଚବକ୍ତ୍ର ତ୍ରିନେତ୍ରଂ ।

ଭାରତୀୟ ହିନ୍ଦୁ ଧର୍ମ ଶାସ୍ତ୍ରକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଶିବ ଉପାସନା ବହୁ ପ୍ରାଚୀନ କାଳରୁ ପ୍ରଚଳିତ । ଭଗବାନ ଶିବଙ୍କୁ ଯେଉଁମାନେ ଉପାସନା କରନ୍ତି ସେମାନଙ୍କୁ ଶୈବ କୁହାଯାଏ । ଏବଂ ସେମାନଙ୍କ ଦ୍ୱାରା ଅନୁପ୍ରାଣିତ ଉପାସନା ମାର୍ଗର ବ୍ୟକ୍ତି ବିଶେଷଙ୍କୁ ଶୈବ ଧର୍ମର ଧାରକ ଭାବରେ ଗ୍ରହଣ କରାଯାଏ । ଋକବେଦରେ ଶିବଙ୍କ ଚରିତ୍ରକୁ ଭୀମ ଓ ଶାନ୍ତ ରୂପରେ ଚିତ୍ରଣ କରାଯାଇ ଅଛି । ପ୍ରଥମତଃ ମହାଶକ୍ତି ରୁଦ୍ରଙ୍କୁ ଦେବ, ଦାନବ, ମାନବ ସମସ୍ତେ ଆରାଧନା କରି ଅସୀମ ଶକ୍ତିର ଅଧିକାରୀ ହୋଇପାରିଛନ୍ତି । ଶିବଙ୍କ ହସ୍ତରେ ବିରାଜିତ ଧନୁଶର ବଜ୍ର ବିଦ୍ୟୁତ୍ ନିକ୍ଷେପ ଦେଖି ଭକ୍ତମାନେ ତାଙ୍କ କ୍ରୋଧରୁ ରକ୍ଷାପାଇବା ପାଇଁ ଆକୁଳ ପ୍ରାର୍ଥନା କରିଥାନ୍ତି । ହେ ବିଶ୍ୱ ନିଅନ୍ତା ଶିବ ଶଙ୍କର, ଆପଣଙ୍କ ଶ୍ରୀଚରଣ ତଳେ ଶରଣ ପଶିଲୁ । ଆପଣ ବିଶ୍ୱ ବ୍ରହ୍ମାଣ୍ଡଙ୍କୁ ରକ୍ଷା କରନ୍ତୁ । ଆପଣଙ୍କୁ ବାରବାର ସତକୋଟି ପ୍ରଣାମ ଜଣାଉଅଛି ।

ବନ୍ଦେ ଦେବ ଉମାପତି
ସୁରଗୁରୁ ବନ୍ଦେ ଜଗତ୍ କାରଣମ୍ ।
ବନ୍ଦେ ପନ୍ନଗ ଭୂଷଣଂ
ମୃଗଧରଂ ବନ୍ଦେ ପଶୁନାଂ ପତି ।

ଦ୍ୱିତୀୟତଃ ଶଙ୍କର ଦୟାଳୁ ଭାବେ ଆଶୁତୋଷ ସୃଷ୍ଟିର ରକ୍ଷାକାରୀ,

ବିଶ୍ୱବ୍ରହ୍ମାଣ୍ଡର ଅଧିଶ୍ୱର ଦେବଦେବ ମହାଦେବ । ସର୍ବରୋଗହାରୀ, ଆରାଧ୍ୟ ବର ପ୍ରଦାୟକ, ମୃତ୍ୟୁଞ୍ଜୟ ଭାବେ ବିଶ୍ୱବିଦିତ । ସକଳ ସୃଷ୍ଟିର ଆଧାର ଶିବ ହେଉଛନ୍ତି ଯୋଗୀଶ୍ରେଷ୍ଠ ଯୋଗେନ୍ଦ୍ର, ଯୋଗେଶ୍ୱର, ମହାତପ ଓ ମହାଯୋଗୀ ଭାବରେ ଖ୍ୟାତ । ସେ ତ ଦୟାର ଠାକୁର ପରମ କାରୁଣିକ । ଭକ୍ତ ଜନାଶ୍ରୟ ଦେବଦେବ ମହାଦେବ ଭାବରେ ସର୍ବାଗ୍ରେ ପୂଜିତ ।

ନମସ୍ତେ ମହେଶ ଆଶୁତୋଷ ଭୂତ ପତି
ନମସ୍ତେ ତ୍ରିଶୂଳ ଧାରୀ ଶିବଭୋଳା ମତି ।
ନମସ୍ତେ ପିନାକ ଧାରୀ ନମଃ ରୁଦ୍ର ହର
ନମସ୍ତେ ଶଙ୍କର ନୀଳକଣ୍ଠ ଯୋଗେଶ୍ୱର ।

ଅଥର୍ବ ବେଦରେ ଶିବଙ୍କ ରୁଦ୍ର, ଉଗ୍ର, ଈଶାନ, ପଶୁପତି, ଭବ ଓ ମହାଦେବ ଆଦି ନାମରେ ନାମିତ କରାଯାଇଛି । ଜଳ, ସ୍ଥଳ, ଆକାଶ ଆଦି ସର୍ବତ୍ର ପ୍ରକଟିତ ଶିବଶକ୍ତି ସର୍ବ ଭୂତର ସୃଷ୍ଟିକର୍ତ୍ତା । ଶିବଶକ୍ତିରୁ ଚତୁର୍ଦ୍ଦଶ ପୁରର ସୃଷ୍ଟି । ଦେବ, ମାନବ ସୁରାସୁର ସକଳ ପ୍ରାଣୀର ହୃଦୟରେ ମୋର ବାସସ୍ଥାନ । ପ୍ରାଣୀ ଭଲମନ୍ଦ କର୍ମ ମୁଁ ଦେଖଇ । ମୋ'ଠାରୁ କ୍ରୋଧ ଓ ଶାନ୍ତର ଜନ୍ମ । ସର୍ବଗ୍ରହ ନକ୍ଷତ୍ର ଆଦି ମୋର ସୃଷ୍ଟି । ଶିବଶକ୍ତିର ଆଧାର ଶିବଶକ୍ତି ପ୍ରଥମ ମୂଳଉତ୍ସ ।

ମୋ' ଠାରୁ ସର୍ଜନା ହେଲା ଚତୁର୍ଦ୍ଦଶ ପୁର
ବ୍ରହ୍ମା, ବିଷ୍ଣୁ, ଇନ୍ଦ୍ର, ଚନ୍ଦ୍ର ଆଉ ଦିବାକର ।
ତରୁଲତା ପଶୁପକ୍ଷୀ ବୃକ୍ଷଲତା ଯେତେ
ସକଳ ସୃଜନା ହେଲେ ମୋ ଆଦେଶ ମତେ ।
× × × × ×
ମୁହିଁ ସର୍ବଦା ପ୍ରାଣୀଙ୍କ କରଇ ମଂଗଳ
ମୁହିଁ ବୈଦ୍ୟ, ମୁହିଁ ଯମ, ମୁରତ ଅନଳ ।

ଶିବ ଭୂତପତି ଓ ପଶୁପତି ଅଟନ୍ତି । ଶିବ ଔଷଧ ପତି ହୋଉଥିବାରୁ ତାଙ୍କୁ ଶ୍ରେଷ୍ଠ ଦିବ୍ୟ ଚିକିତ୍ସକ ଭାବେ ଗ୍ରହଣ କରାଯାଏ । ପଶୁନାଂ ପତି ଶଙ୍କର, ପଶୁମାନଙ୍କର ପତି ଅଟନ୍ତି । ଶକ୍ତି ବଳରେ ଶବ, ଶିବରେ ପରିଣତ ହୋଇପାରେ । ପ୍ରାଣୀର ହର୍ତ୍ତା କର୍ତ୍ତା ଦୈବ ବିଧାତା ପଶୁପତି ଶିବ ଶଙ୍କର କର୍ମରେ ନଥିଲେ ମଧ୍ୟ ସୁଫଳ ପ୍ରଦାନ କରିଥାନ୍ତି । ଏଣୁ ତାଙ୍କୁ ଅକର୍ମ ଦାନୀ ବୋଲି ଗ୍ରହଣ କରାଯାଏ ।

ପଶୁନାଂ ପତି ପାପ ନାଶଂ ପରେଶଂ
ଗଜେନ୍ଦ୍ରସ୍ୟ କୃତିଂ ବସାନଂ ବରଣ୍ୟେ ।

କଟା କୁଟ ମଧ୍ୟେ ସ୍ଫୂରଦ୍ ଗାଂଗ ବାରି
ମହାଦେବଂ ମେକଂ ସ୍ମରାମି ସ୍ମରାରିଂ ।

ଆଦି ଅନାଦି ଅନନ୍ତ ଶିବ ସକଳ ଶକ୍ତିରେ ଶକ୍ତିଆନ । ଶିବଙ୍କର ବିନାସକାରି ଶକ୍ତିବୋଧକ ନାମଗୁଡ଼ିକ । ରୁଦ୍ର, ସର୍ବ, ଉଗ୍ର ଓ ଅଶନି ହେବା ସମୟରେ କଲ୍ୟାଣକାରୀ ନାମ ଭବ, ଇଶାନ, ପଶୁପତି ଓ ମହାଦେବ ଅଟେ । ସ୍ୱୟଂ ବ୍ରହ୍ମା ଓ ବିଷ୍ଣୁ ଶିବଶକ୍ତିର ଗୁଣ ଆକଳନ କରିବାକୁ ଅସମର୍ଥ । ଅପାରୁ ଅପାର ଶିବଶକ୍ତିର ଗୁଣ ଅଟେ ।

ଶାନ୍ତଂ ପଦ୍ମାସନସ୍ଥଂ ଶିଶଧର ମୁକୁଟଂ ପଂଚବକ୍ତ୍ର ତ୍ରିନେତ୍ରଂ
ଶୂଳଂ ବଜ୍ରଂ ଚଖଡ଼ଂଗ ପରୁଶମଭୟଦଂ ଦକ୍ଷିଣାଙ୍ଗେ ବରନ୍ତମ୍
ନାଗଂ ପାଶଂ ଚ ଘଣ୍ଟା ଡମ୍ବରୁ କ ସହିତଂ ଚାଙ୍କୁଶଂ ବାମ ଭାଗେ
ନାନାଳଙ୍କାର ଦୀପ୍ତଂ ସ୍ଫଟିକ ମଣିନିଭିଂ ପାର୍ବତୀଶଂ ନମାମି ।

ଥରେ ବ୍ରହ୍ମା ଓ ବିଷ୍ଣୁଙ୍କ ମଧ୍ୟରେ କଳହର ସୁତ୍ରପାତ ହେଲା ସୃଷ୍ଟିରେ କିଏ ବଡ଼ । ଏହି ସମୟରେ ସ୍ୱୟଂ ଶିବଙ୍କର ଉପସ୍ଥିତ ହୋଇ ଜ୍ୟୋତିସ୍ତମ୍ଭ ରୂପରେ ଦଣ୍ଡାୟମାନ ହୋଇ ଉଭୟ ଶକ୍ତିକୁ ନିଷ୍ପ୍ରଭ କରି ଦେଇଥିଲେ । ଶିବଙ୍କର ଏହି ଜ୍ୟୋତିସ୍ତମ୍ଭ ହିଁ ମର୍ତ୍ତ୍ୟ ବୈକୁଣ୍ଠପୁରରେ ଶିବଲିଂଗ ରୂପରେ ପୂଜିତ । ଦେବତାମାନଙ୍କର ମୂର୍ତ୍ତିକୁ ପ୍ରତିମା ଭାବେ ପୂଜନ କରାଯାଉଥିବା ସମୟରେ ଶିବଙ୍କ ସ୍ତମ୍ଭକୁ ଶିବଲିଂଗ ରୂପେ ପୂଜା କରାଯାଏ । ଲିଂଗ ହେଉଛି ଶିବଙ୍କର ପ୍ରତୀକ । "ଲୟନା ଲିଂଗ ମୁଚ୍ୟତେ" ଲୟ ବା ପ୍ରଳୟ ଯେଉଁଠାରୁ ସୃଷ୍ଟି ତାହା ହିଁ ଲିଂଗ ଭାବେ ଖ୍ୟାତ । ପ୍ରଳୟ ସମୟରେ ବିଶ୍ୱ ବ୍ରହ୍ମାଣ୍ଡ ଜ୍ୟୋର୍ତିଲିଂଗରେ ବିଲୀନ ହୋଇଯାଏ ଓ ସୃଷ୍ଟି କାଳରେ ଜ୍ୟୋର୍ତିଲିଂଗ ମଧ୍ୟରୁ ସକଳ ସୃଷ୍ଟିର ସଂଚାର ହୋଇ ପରିବ୍ୟାପ୍ତ ହେବା ସହ ପରିପ୍ରକାଶ କରିଥାଏ । ଏହି ଗତିଚକ୍ରକୁ ଶିବଙ୍କର ମହାକାଳ ନାମରେ ନାମିତ କରାଯାଇଅଛି ।

ବ୍ରହ୍ମ ମୁରାରୀ ସୁରାର୍ଚ୍ଚିତ ଲିଂଗମ୍ ନିର୍ମଳ ଭାସିତ ଶୋଭିତ ଲିଂଗମ୍
ଜନ୍ମଜ ଦୁଃଖ ବିନାଶକ ଲିଂଗମ୍ ତତ୍ପ୍ରଣମାମି ସଦାଶିବ ଲିଂଗମ୍ ।
ଦେବ ମୁନି ପ୍ରବରାର୍ଚ୍ଚିତ ଲିଂଗମ୍ କାମଦହଂ କରୁଣାକର ଲିଂଗମ୍
ରାବଣ ଦର୍ପ ବିନାଶନ ଲିଂଗମ୍ ତତ୍ ପ୍ରଣମାମି ସଦାଶିବ ଲିଂଗମ୍ ।

ରାମାୟଣ ଓ ମହାଭାରତରେ ମଧ୍ୟ ଶିବଶଙ୍କରଙ୍କ ଗୁଣ କୀର୍ତ୍ତନ କରାଯାଇଛି । ରାମାୟଣରେ ତାଙ୍କୁ ଭୂତନାଥ, ତ୍ରିଲୋଚନ, ଶମ୍ଭୁ ଓ ମହାଦେବ ନାମରେ ନାମିତ କରାଯାଇଛି । ଇନ୍ଦ୍ରଜିତ୍ ମହାଦେବଙ୍କଠାରୁ ବିଭୁକୃପା ଲାଭକରି ବାନର ସେନାଙ୍କୁ ନିଧନ କରିବା ବିଷୟ ଓ ବିଭୀଷଣ ଲଙ୍କା ତ୍ୟାଗ କରିବାପରେ ମହାଦେବଙ୍କ ବରଲାଭ ରାମାୟଣରେ ବର୍ଣ୍ଣିତ । ମହାଭାରତରେ ଶିବ ବ୍ରହ୍ମାଙ୍କ ନିର୍ଦ୍ଦେଶରେ ବିଷପାନ କରି

ନୀଳକଣ୍ଠ ପାଲଟିଛନ୍ତି । ପୁନଶ୍ଚ ଦ୍ରୋଣ ପର୍ବରେ ଶ୍ରୀକୃଷ୍ଣ ଓ ଅର୍ଜୁନ ଜୟଦ୍ରଥର ନିଧନ ନିମିତ ମହାଦେବଙ୍କଠାରୁ ପଶୁପତି ଅସ୍ତ୍ର ଆଣିଥିବା ବିଷୟ ଅନୁଶାସନ ପର୍ବରେ ଭୀଷ୍ମଙ୍କ ଦ୍ୱାରା ଶିବ ଦେବ ଦେବ ମହାଦେବ ଭାବେ ଖ୍ୟାତି ଲାଭ କରିଛନ୍ତି (ଶିବ ମହାତ୍ମ) । ଶିବସ୍ତୁତି ଓ ଶିବ ପ୍ରଶସ୍ତି ଗାନ କରିବା ସଂଗେସଂଗେ ତାଙ୍କଠାରେ ବ୍ରହ୍ମତ୍ୱ ଗୁଣର ପରିପ୍ରକାଶ ଘଟିଥିବାର ଦେଖାଯାଏ ।

ଶୁଦ୍ଧ ସ୍ଫଟିକ ସାଙ୍କାଶଂ ମହାକାଳଂ ତ୍ରିଲୋଚନଂ
ଦିଗମ୍ବରଞ୍ଚ ଦ୍ୱିଭୂଜଂ କାଳୀପାଦଂ ବ୍ୟବସ୍ଥିତଂ
ଊର୍ଦ୍ଧ୍ୱଲିଂଗ ମହାଦେବଂ ଚନ୍ଦ୍ରଚୁଡ଼ଂ ସଦାଶିବଂ
ଧ୍ୟାୟେତ ପରମାନନ୍ଦଂ ଦେବଂ ବାମନ ମୂର୍ତ୍ତିମ୍ ।

ପ୍ରାଚୀନ ସାହିତ୍ୟରେ କେବଳ ତିନିଗୋଟି ଲିଖିତ ଶୈବ ସାହିତ୍ୟ ଦେଖିବାକୁ ପାଉ । ଯଥା- କଳସା, ଚଉତିସା, ରୁଦ୍ର, ସୁଧାନିଧି ଓ ସୋମନାଥ ବ୍ରତକଥା । କଳସା ଚଉତିସାଟି ପଦ୍ୟରେ ଓ ରୁଦ୍ର ସୁଧାନିଧି ସୋମନାଥ ବ୍ରତକଥା ଗଦ୍ୟରେ ରଚିତ । କଳସା ଚଉତିସାରେ ବୃଦ୍ଧ ଶିବଙ୍କ ସହିତ ପାର୍ବତୀଙ୍କର ବିବାହ ବିଷୟ ବର୍ଣ୍ଣିତ । ରୁଦ୍ର ସୁଧାନିଧିରେ ଶିବ ଓ ପାର୍ବତୀଙ୍କର ମହିମା ବର୍ଣ୍ଣନା କରାଯାଇଥିବା ବେଳେ ସୋମନାଥ ବ୍ରତ, ଶୈବଧର୍ମର ପ୍ରଚାର ନିମିତ୍ତ ଶିବ ପାର୍ବତୀଙ୍କର ଗୁଣ ବର୍ଣ୍ଣନା କରିବାରେ ସତମୁଖର ।

ଜୟଦେବ ଭୂତନାଥ ଅନଳ ନୟନ
ଜୟ ଯୋଗେଶ୍ୱର ପ୍ରଭୁ ବୃଷଭ ବାହନ ।
ଜୟ ଶିବଶଙ୍କର ହେ ଜୟ ଗଂଗାଧର
ଜୟ ଭସ୍ମ ଭୋଳା ଗାନ ଶ୍ରୀଚନ୍ଦ୍ର ଶେଖର ।

ଶିବଙ୍କ ଘରଣୀ ପାର୍ବତୀ ସୃଷ୍ଟିର ପରମ ଶକ୍ତି ରୂପେ ବିବେଚିତ । ପାର୍ବତୀ, ଲକ୍ଷ୍ମୀ, ସରସ୍ୱତୀ ଏହି ତ୍ରିମୂର୍ତ୍ତି ଏକ ଆତ୍ମା ଓ ଅଭିନ୍ନ ଅଟନ୍ତି । ଶିବଙ୍କୁ ଉପାସନା କଲେ ଶକ୍ତି, ଧନ ଓ ଐଶ୍ୱର୍ଯ୍ୟ ଲାଭ ହୋଇଥାଏ । ଶିବଙ୍କ ବାହନ ବୃଷଭ ଧର୍ମର ପ୍ରତୀକ ଅଟନ୍ତି । ବୃଷଭର ବର୍ଣ୍ଣଶ୍ୱେତ ଏହା ସତ୍ତ୍ୱ ଗୁଣର ପ୍ରତୀକ । ବୃଷଭର ଚାରୋଟି ପାଦ, ଏହା ଧର୍ମର ଚାରୋଟି ଗୁଣ । ଯଥା- ଜପ, ଶୌଚ, ଦୟା ଏବଂ ଦାନ ଅଟେ । ମନୁଷ୍ୟ ଏହି ଚାରୋଟି ଗୁଣକୁ ନେଇ ଜୀବନର ବ୍ରତକରି ସତ୍ୟ ପଥରେ ଚାଲିଲେ ନିଶ୍ଚୟ ଶିବଲୋକ ପ୍ରାପ୍ତି ହୋଇଥାଏ । ଶିବଙ୍କର ଦୁଇପୁତ୍ର ଗଣେଶ ଓ କାର୍ତ୍ତିକେୟ ଜଣେ ଜ୍ଞାନ ଓ ଅନ୍ୟ ଜଣେ ଶକ୍ତିର ପ୍ରତୀକ ଅଟନ୍ତି ।

ଏକ ଦନ୍ତଂ ମହାକାୟଂ କର୍ପଳଂ ଗଜକର୍ଣ୍ଣକଂ
ଲମ୍ବୋଦରଂ ଚ ବିକଟଂ ବିଘ୍ନନାଶଂ ବିନାୟକଂ ।

× × × × ×

ଧୂମ୍ରଚଣ୍ଡଂ ଗଣାଧକ୍ଷଂ ଭାଲଚନ୍ଦ୍ର ଗଜାନନଂ
କାର୍ତ୍ତିକେୟଂ ନମସ୍ତୁତେ ରୁଦ୍ରତେଜ ସମୁଦ୍ଭବ ।

ଫାଲ୍ଗୁନ ମାସ ଶୁକ୍ଳ ଚତୁର୍ଦ୍ଦଶୀ ଶିବଙ୍କର ଆବିର୍ଭାବ ତିଥି ଭାବରେ ଭାରତର ପୁରପଲ୍ଲୀରେ ଶିବରାତ୍ରି ବା ଜାଗର ନାମରେ ପାଳନ କରାଯାଏ । ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ନିର୍ମଳ ଉପବାସ ପୂର୍ବକ ରାତ୍ରି ଉଜାଗରରେ ପ୍ରଦୀପ ପ୍ରଜ୍ୱଳନ କରି ଶିବରାତ୍ରି ବା ଜାଗର ବ୍ରତ ପାଳନ କରି ଭକ୍ତ ଶିବ କରୁଣା ଲାଭ କରିଥାଏ । ସର୍ବ ଦୁଃଖ ଦୂରିତ ନାଶକ ସୁଖ ପ୍ରଦାୟକ ଶିବଶଙ୍କର ସର୍ବମଂଗଳ ପ୍ରଦାୟକ ଅଟନ୍ତି । ମୃତ୍ୟୁଞ୍ଜୟ ଶିବ ମୃତ୍ୟୁ ମୁଖରେ ପଡୁଥିବା ପ୍ରାଣୀଙ୍କୁ ପୂର୍ଣ୍ଣଜୀବନ ପ୍ରଦାନ କରୁଥିବାରୁ ଶିବଙ୍କ ପାଦ ପଦ୍ମରେ ଶରଣ ପଶିବା ଉଚିତ୍ ।

ତ୍ରିନେତ୍ରଂ ତ୍ରିଗୁଣାଧାରଂ ତ୍ରିଦଳଂ ଚ ସମନ୍ୱିତମ୍
ତ୍ରିଜନ୍ମ ପାପୟାର୍ଥଂ ବିଲ୍ୱପତ୍ର ଶିବାର୍ପଣମ୍ ।

ଶିବଙ୍କ ପ୍ରିୟ ବିଲ୍ୱପତ୍ର ଲକ୍ଷ୍ମୀଙ୍କର ଦକ୍ଷିଣ ହସ୍ତ ପାପୁଲିରୁ ଜାତ । ଏବଂ ବିଲ୍ୱବୃକ୍ଷ ମୂଳରେ ଲକ୍ଷ୍ମୀ ବାସ କରୁଥିବାରୁ ବିଲ୍ୱ ବୃକ୍ଷ ପୂଜାରେ ଗୃହର ଲକ୍ଷ୍ମୀ ବୃଦ୍ଧିପାଏ ଓ ଶିବ ଲିଂଗରେ ବିଲ୍ୱ ଅର୍ପଣ କଲେ ମାନବର ଧନ ଐଶ୍ୱର୍ଯ୍ୟ ଓ ସୁଖଶାନ୍ତି ବୃଦ୍ଧି ଘଟିଥାଏ । ତ୍ରିଶାଖା ବିଲ୍ୱପତ୍ର ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କର ପ୍ରତୀକ ଅଟେ । ଏହା ମଧ ସତ୍ତ୍ୱ, ରଜ ଓ ତମ ଗୁଣର ଆଧାର । ଶିବ ଲିଂଗରେ ବିଲ୍ୱପତ୍ର ଶ୍ରାବଣ ମାସରେ ଜଳାଭିଷେକ କରାଇଲେ ମନୁଷ୍ୟର ମନସ୍କାମନା ସିଦ୍ଧି ଘଟିଥାଏ । ଅଗରୁ, ଚୁଆ, ଚନ୍ଦନ, ଗଞ୍ଜାଇ କସ୍ତୂରୀ ଓ ଦୁଗ୍ଧ ଆଦି ଅର୍ପଣ କରି ଶିବ ପଂଚାକ୍ଷର ମନ୍ତ୍ରରେ 'ଓଁ ନମଃ ଶିବାୟ' ଜପ କରି ବିଲ୍ୱପତ୍ର ଅର୍ପଣ କରାଗଲେ କାର୍ଯ୍ୟ ସିଦ୍ଧି ଘଟିଥାଏ ।

ବିଶ୍ୱେଶ୍ୱରାୟ ନରକାର୍ଣ୍ଣବ ତାରଣାୟ
କର୍ଣ୍ଣା ମୃତାୟ ଶଶୀ ଶେଖର ଭୂଷଣାୟ
କର୍ପୂର କୁନ୍ଦ ଧବଳାୟ ଜଟାଧରାୟ
ଦାରିଦ୍ର ଦୁଃଖ ଦହନାୟ ନମଃ ଶିବାୟଃ ।

ଶିବଙ୍କର ତ୍ରିନେତ୍ର ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନିଙ୍କର ପ୍ରତୀକ । ଶିବଙ୍କର ତ୍ରିଶୂଳ ଓଁ- ଅ-ହ-ମ ର ସମାହାରର ପ୍ରତୀକ ଅଟେ । ଅଁ- ବ୍ରହ୍ମା, ହ- ବିଷ୍ଣୁ, ମ- ମହେଶ୍ୱରଙ୍କର ସ୍ୱରୂପ ଭାବରେ ଗ୍ରହଣ ଯୋଗ୍ୟ ।

ନମସ୍ତୁଭ୍ୟଂ ବିରୁପାକ୍ଷ ନମସ୍ତେ ଦିବ୍ୟ ଚକ୍ଷୁସେ
ନମଃ ପିନାକ ହସ୍ତାୟ ବଜ୍ର ହସ୍ତାୟ ବୈନମଃ
ନମଃ ତ୍ରିଶୂଳ ହସ୍ତାୟ ଦଣ୍ଡ ପାଶାସି ପାତୟେ
ନମଃ ତ୍ରୈଲୋକ ନାଥାୟ ଭୂତା ନାମ ପତିୟୈ ନମଃ ।

ବୈଦିକ ଯୁଗରେ ମୂର୍ତ୍ତି ପୂଜାର ପ୍ରଚଳନ ନଥିଲା । କେବଳ ଯାଗ ଯଜ୍ଞ ଓ ସ୍ତୁତି ଦ୍ୱାରା ଦେବଦେବଙ୍କର ଉପାସନା କରାଯାଉଥିଲା । ମୁନି ଋଷିମାନେ ଧ୍ୟାନ ବଳରେ ଧ୍ୟାନ ମୂର୍ତ୍ତିଙ୍କର ଦର୍ଶନ ପାଉଥିଲେ । ପରବର୍ତ୍ତୀ କାଳରେ ସେମାନଙ୍କର ଦର୍ଶନକୁ ପାଥେୟ କରି ଦର୍ଶନ ଅନୁଭୂତିରେ ଦେବଦେବୀଙ୍କର ମୂର୍ତ୍ତିରେ ପରିକଳ୍ପନା କରାଗଲା । ସେହିଦିନଠାରୁ ପ୍ରତୀମା ପୂଜାର ପ୍ରଚାର ଓ ପ୍ରସାର ଘଟିଆସୁଛି । ବ୍ରହ୍ମା ଓ ବିଷ୍ଣୁଙ୍କର ସମର କାଳୀନ ଫାଲ୍ଗୁନ ମାସ ଶୁକ୍ଳ ଚତୁର୍ଦ୍ଦଶୀ ରାତ୍ରି କାଳରେ ଶିବ ଜ୍ୟୋତି ସ୍ତମ୍ଭ ରୂପରେ ଦଣ୍ଡାୟମାନ ହୋଇଥିବାରୁ ସେହିଦିନଠାରୁ ଶିବଙ୍କର ଜ୍ୟୋତିସ୍ତମ୍ଭ ରୂପକୁ ଲିଂଗ ରୂପରେ ପୂଜା କରାଯାଉଛି । ଶିବଙ୍କୁ ଆଦ୍ୟରେ 'ହ୍ରିଂ' ମନ୍ତ୍ରରେ ପୂଜା କରାଯାଉଥିଲା । ପରବର୍ତ୍ତୀ ସମୟରେ ଧ୍ୟାନ ମନ୍ତ୍ର 'ଦି' ଅକ୍ଷର, 'ତ୍ରି' ଅକ୍ଷରଠାରୁ ଅଷ୍ଟାକ୍ଷର ପର୍ଯ୍ୟନ୍ତ ଅଭିବୃଦ୍ଧି ଘଟିଥିଲା । ସମସ୍ତ ଧ୍ୟାନ ମନ୍ତ୍ର ମଧ୍ୟରେ ଓଁ ନମଃ ଶିବାୟଃ ଶ୍ରେଷ୍ଠ ମନ୍ତ୍ର ଭାବରେ ପରିଗଣିତ ।

ଓଁ ଚନ୍ଦ୍ରକୋଟି ପ୍ରତୀକାଂଶ ତ୍ରିନେତ୍ରଂ ଚନ୍ଦ୍ର ଭୂଷଣଂ
ଆଦିଲିଂଗ ଜଟାଜୁଟଂ ରତ୍ନ ମୌଳି ବିରାଜିତଂ ।
ନୀଳଗ୍ରୀବା ମୂରା ଦାସଂ ନାଗ ହାରା ଶୋଭିତଂ
ବ୍ୟାଘ୍ର ଚର୍ମ ପରିଧାନଂ ରତ୍ନ ସିଂହାସନ ସ୍ଥିତଂ ।

ଦେବଦେବ ମହାଦେବଙ୍କୁ ଚନ୍ଦ୍ରଚୂଡ଼ ଶଶାଙ୍କ ଶେଖର, ଚନ୍ଦ୍ରମୌଳି ଭାବରେ ପୂଜା କରାଯାଏ । ଚନ୍ଦ୍ର ପାର୍ବତୀଙ୍କର ଦର୍ଶନ ନିମିତ୍ତ ଶିବଙ୍କର ମସ୍ତକରେ ଦଣ୍ଡାୟମାନ ରାହୁ, କେତୁଙ୍କ ଆକ୍ରମଣରୁ ରକ୍ଷା ପାଇବା ନିମିତ୍ତ ଚନ୍ଦ୍ର ଶିବଙ୍କର ଶ୍ରୀଚରଣରେ ଶରଣାପନ୍ନ ହୋଇଥିବାରୁ ଶିବ ତାଙ୍କୁ ମସ୍ତକରେ ଧାରଣ କରିଛନ୍ତି । ଗଂଗା ସ୍ୱର୍ଗଲୋକରୁ ମର୍ତ୍ତ୍ୟବରଣ କାଳରେ ଶିବ ଗଂଗାଙ୍କର ପ୍ରଖର ସୋତ୍ରକୁ ମସ୍ତକରେ ଧାରଣ କରିଥିବାରୁ ସେ ଗଂଗାଧର ନାମରେ ନାମିତ ଅଟନ୍ତି । ଭଗବାନ ଶିବଙ୍କୁ ମନ୍ଦାର, ଗଇଛ, ଦୁର୍‌ଦୁରା, ଅରଖ ଆଦି ଫୁଲ ଅର୍ପଣ କରାଯାଇଥାଏ । ଶିବ ଲିଂଗରେ ପଂଚାମୃତ ଘର୍ଷଣ କରିବା ଦ୍ୱାରା ଶିବ କୃପା ମିଳିଥାଏ ବୋଲି ବିଶ୍ୱାସ କରାଯାଏ । ଶେଫାଳି ବକୁଳଂ ବଙ୍କ ବିଚବିଳଂ କାଶଂ କୁଶଂ କିଂଶକଂ ଧୃସ୍ତୁରାର୍କ ଜୟା କଦମ୍ବ କୁଟଜଂ ମନ୍ଦାର ନାଗାର୍ଜୁନଂ ସେବତୀ ନଗରୀ ସରୋଜ ମୁଭଂ ସର୍ବୋତ୍ ଫଳଂ ପାଟଳୀ ପୁନ୍ନାଂଗ କରବୀର

କୁଙ୍କୁମମିଦଂ ପୁଷ୍ପଂ ଶିବେ ଦିୟତାଂ ।

ଲିଂଗ ପୂଜା ବା ଶିଶ୍ନଦେବ ଶୈବଧର୍ମର ମୂଳ ଉତ୍ସ । ଆଦିକବି ଶାରଳା ଦାସ ଶିବଙ୍କର ଲିଂଗ ରୂପ ଓ ଦେବଦେବ ମହାଦେବଙ୍କର ପରମ୍ପରା ଶିବ ରୂପକୁ ବର୍ଣ୍ଣନା କରିଛନ୍ତି । ଦକ୍ଷଯଜ୍ଞରେ ଉମା ଆତ୍ମବିସର୍ଜନ କରିବା ପରେ ଶିବ କୋପାନଳ ହୋଇ ଶ୍ୱଶୁର ଦକ୍ଷଙ୍କୁ ନିଧନ କରିଛନ୍ତି । ଭୟଭୀତା ପ୍ରସୂତି ଶାଶୂ ଶିବଙ୍କୁ ସନ୍ତୁଷ୍ଟ କରିବା ନିମିତ୍ତ ଅର୍ଘ୍ୟ ଥାଳିଧରି ପୂଜା କରିବାକୁ ଯିବା ସମୟରେ କ୍ରୋଧାନ୍ଧ ଶିବ ତାଙ୍କୁ ସ୍ୱଲିଂଗ ପ୍ରଦର୍ଶନ କରି ତାହାକୁ ପୂଜା କରିବାକୁ ପ୍ରକାଶ କରିଛନ୍ତି । ଏଥିରେ ଦକ୍ଷ ବନିତା କ୍ରୋଧ ହୋଇ ଶିବ ଲିଂଗ ରୂପେ ଯୁଗେଯୁଗେ ପୂଜା ପାଆନ୍ତୁ ବୋଲି ଅଭିଶାପ ଦେଇଛନ୍ତି ।

ପତ୍ନୀର ନିଧନେ ଦେବ କୋପେଣ ପରଚଣ୍ଡ
ରାଗେଣ ଈଶ୍ୱର ଶାଶୂକୁ ମାନ୍ୟ ନକରି ଦେଖାଇଲେ ଅଣ୍ଡ
କୋପେଣ ଗର୍ଜନ୍ତି ସ୍ୱାମୀ କାଳସର୍ପ ଜାଣି
ବାକରେ ଅଣ୍ଡ ଧରି ବୋଇଲେ ଯେଥେ ଅର୍ଘ୍ୟ ବନ୍ଦାଅ ଗୋ ଆଣି
× × × × × × ×
ପ୍ରଜାପତିର ପତ୍ନୀ କୋଣେ ବଚନ ପରକାଶି
ଯୁଗେ ଯୁଗେ ଈଶ୍ୱର ତୁ ଅଣ୍ଡ ପୂଜା ହୁଅସି ।

ନିରାକାର ବ୍ରହ୍ମ ସ୍ୱରୂପ ଭଗବାନ ଶିବଶଙ୍କର ଲିଂଗ ସ୍ୱରୂପ । ଯେ ଲିଂଗ ସେ ହିଁ ବ୍ରହ୍ମ ଓ ନିରାକାର, ଦେବଦେବ ମହାଦେବ । ବିଷ୍ଣୁ ଯେପରି ଶାଳଗ୍ରାମ ଶିଳାରେ ପରିପ୍ରକାଶ ଠିକ୍ ସେହିପରି ଶିବଶଙ୍କର ସ୍ତମ୍ଭ ଶିଳାରେ ବା ଲିଂଗ ରୂପରେ ଅବସ୍ଥିତ । ଆର୍ଯ୍ୟ ସଂସ୍କୃତି ଭାରତ ବର୍ଷରେ ଦ୍ୱାଦଶ ଜ୍ୟୋତିର୍ଲିଂଗଙ୍କ ଆବିର୍ଭାବ ଅତୀବ ପ୍ରାଚୀନ ବୋଲି ମନେହୁଏ । (୧) ହିମାଳୟର କେଦାରନାଥ, (୨) କାଶୀର ବିଶ୍ୱେଶ୍ୱର, (୩) ବିହାରର ବୈଦ୍ୟନାଥ, (୪) ମଧ୍ୟପ୍ରଦେଶର ଶିପ୍ରା ନଦୀ ତୀରସ୍ଥ ଉଜ୍ଜୟିନୀର ମହାକାଳେଶ୍ୱର, (୫) ଗୁଜୁରାଟ ସମୁଦ୍ର ନିକଟବର୍ତ୍ତୀ ସୋମନାଥ, (୬) ଗୁଆହାଟୀ ନିକଟସ୍ଥ ବ୍ରହ୍ମପୁରର ଭୀମେଶ୍ୱର, (୭) ଦ୍ୱାରକାର ନାଗେଶ୍ୱର, (୮) ନର୍ମଦା ନଦୀ ତୀରସ୍ଥ ଓଁ କାରେଶ୍ୱର, (୯) କୃଷ୍ଣା ନଦୀ ତୀରସ୍ଥ ଶ୍ରୀ ଶୈଳମ୍ ପର୍ବତ ଉପରସ୍ଥ ମଲ୍ଲିକାର୍ଜ୍ଜୁନ, (୧୦) ଦୌଲତାବାଦ୍ ଅନ୍ତର୍ଗତ ଘୁଷ୍ମେଶ୍ୱର, (୧୧) ମହାରାଷ୍ଟ୍ର ନାସିକର ତ୍ର୍ୟମ୍ବକେଶ୍ୱର, (୧୨) ଭାରତର ଦକ୍ଷିଣରେ ସେତୁବନ୍ଧ ରାମେଶ୍ୱର ।

ଓଁ ହୌଂ ଜୁଁ ସଃ, ଓଁ ଭୂ ର୍ଭୁବଃ ସ୍ୱଃ
ଓଁ ତ୍ରିମ୍ବକଂ ଯଜାମହେ ସୁଗନ୍ଧିଂ ପୁଷ୍ଟିବର୍ଦ୍ଧନମ୍

ଉର୍ବାରୁକନକ ବନ୍ଦନା ନ୍ମୃ ତ୍ୟୋମୁଁକ୍ଷୀୟ ମାମୃତାତ୍ ।

ସ୍ୱଃ ଭବଃ ଭୂଃ ଓଁ ସଃ ଭୂଃ ହେଁ ଓଁ ।

ପୂର୍ଣ୍ଣ ପବିତ୍ର ଓଡ଼ିଶା ଭୂମିରେ ଲିଂଗ ପୂଜା ଅତୀବ ପ୍ରାଚୀନ ହେଲେ ମଧ ସାରଳା ଦାଶଙ୍କ ରଚନାରେ ଶିବ ମହାଲିଂଗ ଓ ଉର୍ଦ୍ଧ୍ୱଲିଂଗ ରାଜା ଭାବେ ବିଶ୍ୱବିଦିତ । କାଶୀନଦୀ ତଟସ୍ଥ ହଇ ଉଦ୍ୟାନ ବନରେ ନାଗକନ୍ୟା ସନ୍ଧ୍ୟାବଳୀର ପୁତ୍ର ନାଗାର୍ଜ୍ଜୁନ ବାଲୁକା ଲିଂଗ ପୂଜା କରି ଅମର ବର ପ୍ରାପ୍ତ ହେବା ସଭାପର୍ବରେ ସାରଳା ଦାସଙ୍କ ମହାଭାରତରେ କରିପାରିଥିଲେ ଓ ଦ୍ରୋଣାଚାର୍ଯ୍ୟଙ୍କୁ ପରାଜିତ କରିବାକୁ ବରଲାଭ କରିବାକୁ ସକ୍ଷମ ହୋଇଥିଲେ । ବନ ପର୍ବରେ ମଧ ଜୟଦ୍ରଥ ଶିବଙ୍କୁ ବଶକରି ଅର୍ଜ୍ଜୁନଙ୍କ ବ୍ୟତୀତ ଅନ୍ୟ ପାଣ୍ଡବ ଚାରି ଭାଇଙ୍କୁ ପରାଜିତ କରିବାକୁ ବର ଆଜ୍ଞା କରି ଆଣିଥିଲେ । ମଧପର୍ବରେ ବରୁଣ ରାଜାଙ୍କ ପତ୍ନୀ ଭକ୍ତିସହ ଶିବଙ୍କୁ ଆରାଧନା କରିଛନ୍ତି । ଶିବ ଭକ୍ତିରେ ପ୍ରିତ ହୋଇ ତାଙ୍କ ଝିଅ ନିଳାଦିର ଗଣ୍ଡଦୋଷ ଦୂରକରି ତାଙ୍କୁ ପୁତ୍ର କାର୍ତ୍ତିକ କୁମାରଙ୍କ ସହିତ ବିବାହ କରାଇ ଦେଇଥିଲେ ।

ବାଲୁକା ଲିଂଗ ଥାପି ତାଡ଼ଇ ବେନିଡ଼ୋଳା
ଲିଂଗ ଉପରେ ଦେଇ ଢାଳଇ ନେତର ଚାମର ।

ଶିବଙ୍କ ଗାୟତ୍ରୀ, ଜପ ଓ ଶିବଲିଂଗ ଦର୍ଶନରେ ଗୋହତ୍ୟା, ବ୍ରହ୍ମହତ୍ୟା, ସ୍ତ୍ରୀହତ୍ୟା ମହାପାପ ଓ ମହାପାତକ ମାନ ନଷ୍ଟ ହୋଇଥାଏ ବୋଲି ଶିବ ପୁରାଣ ସହ ଅନ୍ୟ ପୁରାଣମାନଙ୍କରେ ବର୍ଣ୍ଣିତ ଅଛି । ସାତ ବାର ମଧ୍ୟରୁ ସୋମବାର ଶିବଙ୍କର ଶ୍ରେଷ୍ଠ ବାର । ୨୧ଟି ସୋମବାର ନିଷ୍ଠାର ସହ ପାଳନ କଲେ ନିଜର ମନସ୍କାମନା ପୂର୍ଣ୍ଣ ହୋଇଥାଏ ବୋଲି ବିଶ୍ୱାସ କରାଯାଏ ।

ଶିବଙ୍କ ପାଦୁକା ଅମୃତ ସମ, ସର୍ବରୋଗ ଦୂରିତ ନାଶକ, ଆକସ୍ମିକ ମୃତ୍ୟୁ ଓ ନବଗ୍ରହଙ୍କ କୋପ ଦୃଷ୍ଟିରୁ ରକ୍ଷା ମିଳିଥାଏ ।

ଓଁ ତତ୍ ପୁରୁଷାୟ ବିଦ୍ମହେ
ମହାଦେବାୟ ଧୀ ମହି
ତନ୍ନୋ ରୁଦ୍ରଃ ପ୍ରଚୋଦୟାତ୍ ।

ସାଧାରଣତଃ ପ୍ରାଚୀନ ଶାସ୍ତ୍ର ଓ ପୁରାଣମାନଙ୍କରେ ଶିବଙ୍କର ରୂପ କଳ୍ପନା କରାଯାଇଛି । ମାନବୀୟ ରୂପ ଭାବରେ ଶିବଶଙ୍କରଙ୍କ ଶରୀର ଧବଳ ମୂର୍ତ୍ତି, ସଦାସର୍ବଦା ଭସ୍ମବିଲେପନ, ଜଟାଜୁଟ ମଣ୍ଡିତ ବ୍ୟାଘ୍ର ଚର୍ମ ପରିହିତ ସୌଷ୍ଠବ ବଳିଷ୍ଠ ଶରୀର ଯୁକ୍ତ ଅଟନ୍ତି । କାନ୍ଧରେ ପଇତା, ଗଳାରେ ସର୍ପ, ହସ୍ତରେ ତ୍ରିଶୂଳ ଓ ଡମ୍ବରୁ ମସ୍ତକରେ

ଅର୍ଦ୍ଧଚନ୍ଦ୍ର ଶୋଭିତ, ରୁଦ୍ରାକ୍ଷମାଳ ପରିହିତ, ଶିବ ନୀଳକଣ୍ଠ ଅଟନ୍ତି ।

ଓଁ ନାଗେନ୍ଦ୍ର ହାରାୟ ତ୍ରିଲୋଚନାୟ
ଭସ୍ମାଙ୍ଗ ରାଗାୟ ମହେଶ୍ୱରାୟ
ନିତ୍ୟାୟ ଶୁଦ୍ଧାୟ ଦିଗମ୍ବରାୟ
ତସ୍ମୈ 'ନ' କାରାୟ ନମଃ ଶିବାୟ ।

ସାଗର ମନ୍ଥନ ସମୟରେ ବିଷପାନ କରି ନୀଳକଣ୍ଠ ନାମକୁ ଧାରଣ କରିଛନ୍ତି । ଶଙ୍କରଙ୍କ ପରିବାର ଏକ ଆଦର୍ଶ ପରିବାର ଭାବେ ବିଶ୍ୱ ବନ୍ଦନୀୟ । କାରଣ ପରିବାର ମଧ୍ୟରେ ପରସ୍ପର ବିରୋଧି ବା ଶତ୍ରୁମାନେ ଏକତ୍ର ସହାବସ୍ଥାନ କରି ଶାନ୍ତିରେ ବସବାସ କରିଥାନ୍ତି । କାହାର କାହାପ୍ରତି ହିଂସା, ଦ୍ୱେଷ, ଅସୂୟା ଓ ଘୃଣା ଭାବ ନଥାଏ । ଶିବଙ୍କ ବକ୍ଷରେ ବିରାଜମାନ ସର୍ପର ଭକ୍ଷକ ହେଉଛି ମୟୂର, ଯେ କି କାର୍ତ୍ତିକଙ୍କର ବାହନ । ନିଜର ବାହନ ନନ୍ଦୀର ଭକ୍ଷକ ହେଉଛି ସିଂହ, ଯିଏ ପାର୍ବତୀଙ୍କର ବାହନ । ଶଙ୍କରଙ୍କ ଘରେ ଭକ୍ଷ ଓ ଭକ୍ଷକମାନେ ଶାନ୍ତିରେ ଏକତ୍ର ବସବାସ କରନ୍ତି । ଶିବଙ୍କର ବାସସ୍ଥାନ, ଶ୍ମଶାନ । ତାଙ୍କର ଜନ୍ମ, ମୃତ୍ୟୁ ନାହିଁ । ସେ ହିଁ ମୃତ୍ୟୁଞ୍ଜୟୀ । କୈଳାସ କନ୍ଦର ନୀଳସୁନ୍ଦର ପର୍ବତମାଳାର ସଦାସର୍ବଦା ଯୋଗାରୂଢ଼ ଥିବାରୁ ତାଙ୍କୁ କୈଳାସପତି ବା ମହାଯୋଗେଶ୍ୱର ଭାବରେ ଗ୍ରହଣ କରାଯାଏ ।

ସତୀ ସ୍ୱାଧ୍ୱୀ ସ୍ତ୍ରୀଲୋକମାନେ ଶିବବ୍ରତ ପାଳନ କରିବା ଉଚିତ୍ । ଏହି ବ୍ରତ ପାଳନ ଦ୍ୱାରା ଧନ, ମାନ, ଯଶ, ସୌଭାଗ୍ୟ ଓ ବୈଧବ୍ୟ ଦୋଷ ଖଣ୍ଡନ ହୋଇଥାଏ । ଏହି ବ୍ରତକୁ ବୈଶାଖ ମାସ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ତିଥିରେ ପାଳନ କରବା ଉଚିତ । ଦିବସରେ ଉପବାସ ରହି ଶିବ, ପାର୍ବତୀ ମନ୍ଦିରରେ ପୂଜନ ଅନିବାର୍ଯ୍ୟ । "ଓଁ ହ୍ରିଂରେ ହେି ଶିବ ପାର୍ବତୀଭ୍ୟୋ ନମଃ" ମନ୍ତ୍ରରେ ଶିବ ପାର୍ବତୀଙ୍କୁ ଅଭିମନ୍ତ୍ରିତ କରି ପୂଜାର୍ଚ୍ଚନା କରିବା ଉଚିତ ।

ଶିବେ ଭକ୍ତିଃ ଶିବେ ଭକ୍ତିଃ ଶିବେ ଭକ୍ତିର୍ଭବେ ଭବେ
ଅନ୍ୟଥା ଶରଣଂ ନାସ୍ତି ତ୍ୱମେବ ଶରଣଂ ମମ ।

ଓଁ ଶାନ୍ତିଃ ଓଁ ଶାନ୍ତିଃ ଓଁ ଶାନ୍ତିଃ ॥



# ତ୍ରାହିମାଂ ଦେବୀ ଦୁର୍ଗେ

ଧ୍ୟାୟେଷ୍ଣୁ ବର୍ଣ୍ଣ ବର୍ଣ୍ଣାଭାଂ ତ୍ରିନେତ୍ରାଂ ଚାରୁ ହାସିନୀଂ
ସର୍ବ ଲକ୍ଷଣ ସଂପନ୍ନା ମର୍ଦ୍ଧେନ୍ଦୁ କୃତ ଶେଖରାଂ
ଚତୁର୍ଭୁଜାଂ ଶଙ୍ଖଚକ୍ରଧରାଂ ବାଳା ସ୍ୱରୂପିଣୀଂ
ଭଦ୍ୟିତ୍ରିଶୂଳ ନିର୍ଭିନ୍ନ ମହିଷାଂ ସିଂହ ବାହିନୀଂ ।।

ଜଗତଜନନୀ ମା' ଦୁର୍ଗାଙ୍କର ନବରାତ୍ର ପୂଜା ଦେଶବାସୀଙ୍କ ମନରେ ଆନନ୍ଦର ଲହରୀ ଖେଳେଇ ଦେଇଥାଏ । ମାଆଙ୍କ ଉପାସନା ଦ୍ୱାରା ମନରୁ ଅନ୍ଧକାର ଦୂରୀଭୂତ ହୁଏ । ଦେବତାମାନଙ୍କର ସାମୂହିକ ଶକ୍ତିର ସମ୍ମେଳନରେ ଦେବୀ ଦୁର୍ଗାଙ୍କର ସୃଷ୍ଟି । ଦୁର୍ଗାଙ୍କ ଧରାବକ୍ଷରେ ଅବତରଣ ଫଳରେ ଆସୁରିକ ପ୍ରବୃତ୍ତିର ମୂଳୋତ୍ପାଟନ ହେବା ସହ ଅନୀତି ଓ ଅସୁରତାର ଦମନ ହୋଇଥିବାର ଜଣାଯାଏ । ଦୁର୍ଦ୍ଦାନ୍ତ ମହାପରାକ୍ରମୀ ଅସୁର ଦେବଗଣଙ୍କୁ ଅକଥନୀୟ ଅତ୍ୟାଚାର କରିବା ଫଳରେ ତ୍ରିଲୋକରେ ଆତଙ୍କ ଖେଳିଯାଇଥିଲା । ଏହାକୁ ପ୍ରତିହତ କରିବା ପାଇଁ ଦେବଶକ୍ତିର ପ୍ରୟୋଗ ନିଷ୍ଫଳ ହୋଇଯିବା ହେତୁ ଦେବତାମାନଙ୍କର ସଂଗଠିତ ଶକ୍ତି ବ୍ରହ୍ମ ତେଜରୁ ମାଆ ଦୁର୍ଗାଙ୍କର ଆର୍ବିଭାବ ହୋଇଥିବା ବିଷୟ "ଦୁର୍ଗା ସପ୍ତସତୀରେ" ବର୍ଣ୍ଣିତ ।

ମହିଷାମର୍ଦ୍ଦିନୀ ଦୁର୍ଗାଙ୍କର ମୁଖ ଭଗବାନ ଶଙ୍କରଙ୍କ ତେଜରୁ ପ୍ରକଟିତ ହେବା ସହ ଯମରାଜଙ୍କ ତେଜରୁ ଶିରରେ କେଶଗୁଚ୍ଛ ସୃଷ୍ଟି ହୋଇଥିଲା । ବିଷ୍ଣୁ ଭଗବାନଙ୍କ ତେଜରୁ ଦୁଇ ଭୁଜ ବିକଶିତ ହେବା ସହ, ଚନ୍ଦ୍ରମା ଓ ଇନ୍ଦ୍ରଙ୍କର ତେଜ ବଳରେ ସ୍ତନ ଯୁଗଳ ଓ କଟି ପ୍ରଦେଶର ସୃଷ୍ଟି ହୋଇଥିଲା, ପୃଥ୍ୱୀ ତେଜରୁ ନିତମ୍ବ ସୃଷ୍ଟି ହୋଇଥିବାବେଳେ ବ୍ରହ୍ମାଙ୍କ ତେଜରୁ ଦୁଇ ଚରଣ ସୃଷ୍ଟି ହେଲା । କୁବେରଙ୍କ ତେଜରୁ ନାସିକା, ସନ୍ଧ୍ୟା ତେଜରୁ ଭ୍ରୂଲତା ଓ ବାୟୁଙ୍କ ତେଜରୁ କର୍ଣ୍ଣର ଉତ୍ପନ୍ନ ହୋଇଥିଲା । ପ୍ରଜାପତି ଓ ଅଗ୍ନିଙ୍କ ତେଜରୁ ଦାନ୍ତ ଓ ତିନି ନେତ୍ରର ଉଦ୍ଭବ ହୋଇଥିବା ସମୟରେ, ସର୍ବ ଦେବଦେବୀଙ୍କ ଅଖଣ୍ଡ ଶକ୍ତି ତେଜରୁ ମହିଷାସୁର ମର୍ଦ୍ଦିନୀ ଦେବୀ ଦୁର୍ଗାଙ୍କର ସୃଷ୍ଟି ।

ଗାରୁଡ଼ୋତ୍ପଳ ସନ୍ନିଭାଂ ମଣିମୟ କୁଣ୍ଡଳ, ମଣ୍ଡିତାଂ
ନୌମି ଭାଲ ବିଲୋଚନାଂ ମହିଷୋତ୍ତମାଂ ନିଷେ ଦୁଷାଂ
ଶଙ୍ଖ ଚକ୍ର କୃପାଣ ଖେଟକ ବାଣ କାର୍ମୂକ ଶୂଳକାନ୍
ତର୍ଜନିମର୍ପ ବିଭ୍ରତାଂ ନିଜ ବାହୁଭିଃ ଶଶୀ ଶେଖରାଂ ।।

ଦେବୀ ଦୁର୍ଗାଙ୍କୁ ସର୍ବଶକ୍ତିର ଆଧାର କରି ଗଢ଼ିତୋଳିବାକୁ ଯାଇ ଦେବଦେବ ମହାଦେବ ନିଜ ଶୂଳରୁ ଆଉ ଏକ ଶୂଳ ଉତ୍ପନ୍ନ କରି ଦୁର୍ଗାଙ୍କୁ ଉପହାର ଦେଇଥିଲେ । ସେହିପରି ମଧ୍ୟ ଭଗବାନ ବିଷ୍ଣୁ ନିଜ ଚକ୍ରରୁ ଆଉ ଏକ ଚକ୍ର ସୃଷ୍ଟି କରି ପ୍ରଦାନ କଲେ । ବରୁଣ ଦେବଙ୍କ ଶଙ୍ଖ ଦେଇଥିବା ସମୟରେ ଅଗ୍ନି ଦେବ ପ୍ରଦାନ କଲେ ଶକ୍ତି ଓ ବାୟୁ ଦେବ ଉପହାର ସ୍ୱରୂପ ପ୍ରଦାନ କଲେ ଧନୁ ଓ ତୀର ପରିପୂର୍ଣ୍ଣ ତୂଣୀର । ବରୁଣ ଦେବଙ୍କ ଉପହାର ପାଶ ଥିବା ସମୟରେ ଯମରାଜ ପ୍ରଦାନ କରିଥିଲେ କାଳଦଣ୍ଡରୁ ଦଣ୍ଡ । ପ୍ରଜାପତି ମାଳା ଦେଇଥିବା ସମୟରେ ବ୍ରହ୍ମ ଦେବ ପ୍ରଦାନ କଲେ କମଣ୍ଡଳୁ । ସୂର୍ଯ୍ୟ ନାରାୟଣଙ୍କ ଅମାୟିକ ତେଜ ପ୍ରକୋପରେ ସୃଷ୍ଟି ହେଲା ଦେବୀ ଦୁର୍ଗାଙ୍କର ଲୋମ କୂପରେ ଅସାଧାରଣ ତେଜ । କାଳ ବେଳେ ଉଜ୍ୱଳ ଢାଲ ଏବଂ ଶାଣିତ ଖଡ୍ଗ । ବିଶ୍ୱକର୍ମା ପ୍ରଦାନ କଲେ ଶାଣିତ ପରଶୁ । ଅନେକ ଅସ୍ତ୍ର ଓ ଅଭେଦ୍ୟ କବଚ ଓ ବକ୍ଷରେ ଧାରଣ କରିବା ଲାଗି ଅମ୍ଳାନ କମଳ ମାଳ । କ୍ଷୀର ସାଗର ପ୍ରଦାନ କଲେ ଦିବ୍ୟ ଚୂଡ଼ାମଣି, ଦୁଇ କୁଣ୍ଡଳ, କଡ଼ା, ଉଜ୍ୱଳ ଅର୍ଦ୍ଧଚନ୍ଦ୍ର, ସବୁ ବାହୁ ପାଇଁ କେୟୂର, ଦୁଇ ଚରଣ ଲାଗି ନୂପୁର, ଗଳାର ଭୂଷଣ ପାଇଁ ଗଳାରତ୍ନ ମାଳା, ସର୍ବ ଅଙ୍ଗୁଷ୍ଠିରେ ଧାରଣ ନିମନ୍ତେ ରତ୍ନ ଖଚିତ ମୁଦ୍ରିକା ଓ ତତ୍‌ସହ ଉଜ୍ୱଳ ରତ୍ନହାର, ଜୀର୍ଣ୍ଣ, ମଳିନ ନହେଉଥିବା ଦିବ୍ୟ ଦୁଇ ବସ୍ତ୍ର । ନାନା ବିଧିରତ୍ନ ଧନାଧିପତି କୁବେର ମଧୁପୂର୍ଣ୍ଣ ପାନ ପାତ୍ର ପ୍ରଦାନ କରିବା ସମୟରେ ଜଳାଧିପତି ପ୍ରଦାନ କଲେ ସୁନ୍ଦର କମଳ ପୁଷ୍ପ । ଶେଷଦେବ ପ୍ରଦାନ କଲେ ମଣି ବିଭୂଷିତ ନାଗହାର । ଅନ୍ୟ ଦେବଦେବୀ ଗଣ ବହୁ ମୂଲ୍ୟବାନ ଆଭୂଷଣ ଦେବା ସହ ଅସ୍ତ୍ର ଶସ୍ତ୍ର ପ୍ରଦାନ କଲେ । ପରିଶେଷରେ ଗିରିରାଜ ହିମାଳୟ ବାହନ ନିମନ୍ତେ ପ୍ରଦାନ କଲେ ପଶୁପତି ସିଂହ । ସମସ୍ତ ଦେବତାଙ୍କ ମହାଶକ୍ତିରେ ଶକ୍ତିଶାଳୀ ହୋଇ ଉଠିଲେ ଦେବୀ ଦୁର୍ଗା, କ୍ଷଣିକ ମଧ୍ୟରେ ସଂହାର କରି ଚାଲିରେ ଅସୁର କୁଳକୁ ଓ ମହିଷାସୁର ସହ ତା'ର ଅସଂଖ୍ୟ ସେନା ସର୍ବତ୍ର ପୁନଃ ପ୍ରତିଷ୍ଠା ହୋଇ ପାରିଥିଲା ଦେବଶକ୍ତିର ପ୍ରଭାବ ଓ ସର୍ବତ୍ର ଶୁଭୁଥିଲା ଧର୍ମର ଜୟ ଜୟକାର ଧ୍ୱନି । ଏହି କଥା ବସ୍ତୁ ଦୁର୍ଗା ସପ୍ତସତୀ ଦ୍ୱିତୀୟ ଅଧ୍ୟାୟରେ ବର୍ଣ୍ଣିତ ।

ସିଂହସ୍ଥା ଶଶି ଶେଖରାଂ ମରକତ ପ୍ରଖ୍ୟୈଚତୁର୍ଭି ର୍ଭୁଜୈଃ
ଶଙ୍ଖ ଚକ୍ରି ଧନୁଃ ଶରାଂଶ୍ଚ ଦଧତି ନେତ୍ରୈସ୍ତ୍ରିଭିଃ ଶୋଭିତ ।
ଆମୁକ୍ତାଙ୍ଗଦହାର କଙ୍କଣ କାଞ୍ଚିରଣ ନୂପୁରା
ଦୁର୍ଗା ଦୁର୍ଗତି ହାରିଣୀ ଭବତୁ ଯେ ରତ୍ନୋଲ୍ଲସତ୍ କୁଣ୍ଡଳା ।

ଓଡ଼ିଶାରେ ଶକ୍ତିପୂଜାର ପ୍ରମାଣ ତୁଷ୍ଟିକର ଦେବଙ୍କ ତାମ୍ର ଫଳକରୁ ଜଣାଯାଏ । ଖ୍ରୀଷ୍ଟୀୟ ୫ମ ଓ ୬ଷ୍ଠ ଶତାବ୍ଦୀରେ ସ୍ତମ୍ଭେଶ୍ୱରୀ ଦେବୀଙ୍କ ଉପାସକ ତୁଷ୍ଟିକର ଥିଲେ ।

ଖ୍ରୀଷ୍ଟୀୟ ୮ମ ଓ ଏକାଦଶ ଶତାବ୍ଦୀରେ ଭଞ୍ଜ ଓ ଶୁଂଗ ବଂଶର ରାଜାମାନଙ୍କ ତାମ୍ରଫଳକଗୁଡ଼ିକରେ ସ୍ତମ୍ଭେଶ୍ୱରୀଙ୍କ ସଂପର୍କରେ ଜଣାଯାଏ । ଓଡ଼ିଶାର ସୋନପୁରଠାରେ ସ୍ତମ୍ଭେଶ୍ୱରୀଙ୍କ ଏକ ସ୍ତମ୍ଭାକାର ବିଗ୍ରହ ଅବସ୍ଥିତ । ଗଞ୍ଜାମର ଆସ୍କାରଠାରେ ମଧ୍ୟ ସ୍ତମ୍ଭେଶ୍ୱରୀଙ୍କ ମନ୍ଦିର ଦେଖିବାକୁ ମିଳେ । ସ୍ତମ୍ଭେଶ୍ୱରୀଙ୍କୁ ପରବର୍ତ୍ତୀ ସମୟରେ ଶକ୍ତି ରୂପରେ ପୂଜା କରାଯାଇଥିଲା । ମାର୍କଣ୍ଡେୟ ପୁରାଣ ପୂର୍ବରୁ ଦେବୀଙ୍କର ନାମ ଅପରାଜିତା ଓ ଉମା ଥିଲା । ୫ମ ଶତାବ୍ଦୀରେ ରଚିତ ମାର୍କଣ୍ଡେୟ ପୁରାଣରୁ ଜଣାଯାଏ ଦେବୀ ଦୁର୍ଗାଙ୍କ ଦ୍ୱାରା ମହିଷାସୁର, ଚଣ୍ଡମୁଣ୍ଡ, ରକ୍ତବୀର୍ଯ୍ୟ, ଶୁମ୍ଭ ନିଶୁମ୍ଭ, ମଧୁକୈଟଭ ଆଦି ରାକ୍ଷସମାନଙ୍କର ବଂଶ ବିନାଶ ହେବାର ଜଣାଯାଏ । ସୁରଥ ରାଜା ଓ ସମାଧି ବୈଶ୍ୟ ଦୁର୍ଗାଙ୍କୁ ଆରାଧନାରେ ସନ୍ତୁଷ୍ଟ କରି ରାଜ୍ୟ ଓ ଧନ ପ୍ରାପ୍ତି ହୋଇଥିବାର ପୁରାଣମାନଙ୍କରୁ ଜଣାଯାଏ । ଦୁର୍ଗା ନାମର ପ୍ରଥମ ସମ୍ଭବ ମାର୍କଣ୍ଡେୟ ପୁରାଣରେ ହୋଇଥିଲା । ସ୍କନ୍ଦ ପୁରାଣରେ ମଧ୍ୟ ଦୁର୍ଗାନାମର ବୈଶିଷ୍ଟ୍ୟ ଦେଖିବାକୁ ମିଳେ ।

ପ୍ରାଚୀନ ତନ୍ତ୍ର ଶାସ୍ତ୍ରମାନଙ୍କରୁ ଜଣାଯାଏ ଉଡ୍ରାଙ୍ଗ ଓ ଉଡ୍ରାଖ୍ୟ, ପୂର୍ଣ୍ଣକୋଟି ଏବଂ କାମାକ୍ଷା ମଧ୍ୟରୁ ଓଡ୍ୟାଂଗ ବା ଉଡ୍ର ଓଡ଼ିଶାକୁ ହିଁ ବୁଝାଉଥିଲା । ଉଡ୍ରାଖ୍ୟଂ ପ୍ରଥମଂ ପୀଠମ୍ । ଯାହାକୁ କି ଓଡ଼ିଶାର ପ୍ରଥମ ପୀଠ ଓ ପ୍ରଥମ ଶକ୍ତି ପୀଠ ଭାବରେ ଗ୍ରହଣ କରାଯାଏ । ଓଡ଼ିଶାର ଯାଜପୁର ଓ ଭୁବନେଶ୍ୱର ତନ୍ତ୍ର ସାଧନାର ପ୍ରଧାନ କେନ୍ଦ୍ରବିନ୍ଦୁ ଥିଲା । ଭୁବନେଶ୍ୱରଠାରେ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ଶକ୍ତି ପୂଜାର ଆରମ୍ଭ ହୋଇଥିବାର ଜଣାଯାଏ । ଉକ୍ତ ସମୟରେ ବୈତାଳ ମନ୍ଦିର ଭିତରପଟ କାନ୍ଥରେ କେତେକ ତ୍ରାନ୍ତିକ ମୂର୍ତ୍ତି ବିରାଜିତ ଥିଲା । ଭୟଙ୍କର ଚାମୁଣ୍ଡା ମୂର୍ତ୍ତି ହେଉଛନ୍ତି ମୁଖ୍ୟ । ଏହି ମନ୍ଦିରରେ ମଧ୍ୟ ଅର୍ଦ୍ଧନାରୀଶ୍ୱର ଓ ମହିଷାମର୍ଦ୍ଦିନୀଙ୍କର ମୂର୍ତ୍ତି ଦେଖିବାକୁ ମିଳେ । କାଳକ୍ରମେ ପରବର୍ତ୍ତୀ ସମୟରେ ଏଠାରେ ଶକ୍ତି ମନ୍ଦିର ଗଢ଼ି ଉଠିଥିଲା । ଯାହାଫଳରେ ବୈତାଳ, ଶଶୀରେଶ୍ୱରୀ, ମାର୍କଣ୍ଡେଶ୍ୱର ଓ ମୋହିନୀ ମନ୍ଦିର କାନ୍ଥରେ ମହିଷା ମର୍ଦ୍ଦିନୀଙ୍କ ମୂର୍ତ୍ତି ବିରାଜିତ ଥିଲା ।

ତତ୍ରୈବତ ବଧିଷ୍ୟାମି ଦୁର୍ଗାମାଖ୍ୟାଂ ମହାସୁରମ୍
ଦୁର୍ଗାଦେବୀତି ବିଖ୍ୟାତଂ ତନ୍ମେ ନାମ ଭବିଷ୍ୟତି ।

କାଳୀକା ପୁରାଣ ବର୍ଣ୍ଣନା ଅନୁସାରେ ଓଡ଼ିଶା ବା "ଉଡ୍ରଂ ପୀଠ" । ଶକ୍ତି ପୀଠ ଭାବେ ଖ୍ୟାତ "ଜ୍ଞାନାର୍ଣ୍ଣବ ତନ୍ତ୍ର"ରେ ବର୍ଣ୍ଣିତ ପଚାଶ ଗୋଟି ପୀଠ ମଧ୍ୟରୁ "ଏକାମ୍ର" ପୀଠ (ଭୁବନେଶ୍ୱର) । ବିରଜା ପୀଠ (ଯାଜପୁର) ଓ ଜାଳଶୈଳ ପୀଠ ଅନ୍ୟତମ । କୁବ୍‌ଜିକା ତନ୍ତ୍ର ଅନୁସାରେ ୪୨ ଗୋଟିଏ ଶକ୍ତି ପୀଠ ମଧ୍ୟରୁ "ମା' ବିରଜା"ଙ୍କ ପୀଠ ଅନ୍ୟାନ୍ୟ ପୀଠ ମଧ୍ୟରେ ପ୍ରଧାନ । ଓଡ଼ିଶାରେ ମାତୃଶକ୍ତିର ଆରାଧନା

ଭିନ୍ନଭିନ୍ନ ରୂପରେ କରାଗଲେ ମଧ୍ୟ ମା' ବିରଜା ଦୁର୍ଗା ଭାବେ ପୂଜିତା । ସପ୍ତ ଚଣ୍ଡୀଙ୍କ ଦେବୀ କବଚ ଉକ୍ତି ଅନୁସାରେ ଶକ୍ତିକୁ ଅନେକ ରୂପରେ ଆରାଧନା କରାଯାଏ । ସେଗୁଡ଼ିକ ସର୍ବ ସୁଖ ପ୍ରଦାୟିନୀ, ସକଳ ଅଭୀଷ୍ଟ ଦାୟିନୀ, ଧର୍ମ, ଅର୍ଥ, କାମ ଓ ମୋକ୍ଷ ପ୍ରଦାୟିନୀ ଅଟନ୍ତି ।

ସଂସାରର ସୃଷ୍ଟି, ସ୍ଥିତି ଓ ପ୍ରଳୟର ମୂଳ ହେଉଛି ମାତୃଶକ୍ତି, ଶକ୍ତି ବିନା ଶିବ ଶବରେ ପରିଣତ ହୁଏ । ଶକ୍ତିର ଉପାସକମାନଙ୍କୁ ଶାକ୍ତ କୁହାଯାଏ । ଏମାନଙ୍କ ଦ୍ୱାରା ଅନୁଷ୍ଠିତ ଆରାଧନା ପ୍ରକ୍ରିୟାକୁ ଶାକ୍ତ ଭାବରେ ଗ୍ରହଣ କରାଯାଏ । ଆର୍ଯ୍ୟ ଓ ଅନାର୍ଯ୍ୟମାନଙ୍କର ବିଶ୍ୱାସ ଓ ଶ୍ରଦ୍ଧା ଦ୍ୱାରା ଶାକ୍ତ ଧର୍ମ ବିକଶିତ । କେତେକଙ୍କ ମତରେ ପୃଥିବୀମାତାଙ୍କ ପୂଜାର୍ଚ୍ଚନା ଦ୍ୱାରା ଶାକ୍ତ ସଂସ୍କୃତିର ବିକାଶ ହୋଇଥିଲା । ମାତୃ ପୂଜା ହିଁ ଶାକ୍ତ ଉପାସନାର ମୂଳଉତ୍ସ । ଶକ୍ତି ଉପାସନାକୁ ଯୁଗେଯୁଗେ ଶ୍ରେଷ୍ଠତା ପ୍ରଦାନ କରାଯାଉଛି ।

ଶରଣାଗତଃ ଦୀନାର୍ତ୍ତଃ ପରିତ୍ରାଣ ପରାୟଣେ
ସର୍ବସ୍ୟାର୍ତ୍ତି ହରେ ଦେବୀ ନାରାୟଣୀ ନମୋଽସ୍ତୁତେ ॥

ଦେବୀ ଦୁର୍ଗାଙ୍କୁ ସାଧାରଣତଃ କାଳୀ, ଦୁର୍ଗା, ବନଦୁର୍ଗା, ମନ୍ଦିର ବାସିନୀ, କୁମାରୀ, ତାରା, ଶାକମ୍ଭରୀ, କରାଳୀ, ବିନ୍ଧ୍ୟ ପର୍ବତ ବାସିନୀ, ଚଣ୍ଡୀ, କାପାଳୀ ଆଦି ବହୁବିଧ ନାମରେ ସ୍ମରଣ କରାଯାଇ ଆବାହନ କରାଯାଏ । ନାରାୟଣୀ ସ୍ତୁତିରେ ମଧ୍ୟ ଦେବୀଙ୍କୁ ବିଶ୍ୱବୀଜ ଓ ବୈଷ୍ଣବୀ ଶକ୍ତି, ବିଶ୍ୱାଧାର, ସପ୍ତମାତୃକା, ଲକ୍ଷ୍ମୀ, ସରସ୍ୱତୀ, ନାରାୟଣୀ, ଦୁର୍ଗା, ଭଦ୍ରକାଳୀ, ଅମ୍ବିକା ଓ କାତାୟନୀ ଆଦି ନାମରେ ପୂଜା କରାଯାଏ । ମା' ଦୁର୍ଗା ହିଁ ପୂର୍ଣ୍ଣବ୍ରହ୍ମ, ଶାକମ୍ଭରୀ ଅଟନ୍ତି ।

ଦୁର୍ଗାଙ୍କର ପ୍ରଧାନ ୧୦ଟି ନାମ ହେଲା, କାଳୀ, ତାରା, ଷୋଡ଼ଶୀ, ଭୁବନେଶ୍ୱରୀ, ଭୈରବୀ, ଧୂମାବତୀ, ମାତଂଗୀ, ବଗଳା, କମଳା ଓ ଛିନ୍ନମସ୍ତା ।

ତାମ୍ ଅଗ୍ନି ବର୍ଣ୍ଣାଂ ତପସା ଜ୍ୱଳନ୍ତୀଂ
ବୈରୋଚନୀଂ କର୍ମଫଳେଷୁଜୁଷ୍ଟାମ୍
ଦୁର୍ଗା ଦେବୀଂ ଶରଣଂ ପ୍ରପଦ୍ୟା
ମହେଽସୁରାନ୍ନା ଶୟିତ୍ୱୈତେ ନମଃ ॥

ସପ୍ତଚଣ୍ଡୀରେ ମା' ଦୁର୍ଗାଙ୍କୁ ନବ ରୂପରେ ବନ୍ଦନା କରାଯାଏ, ଯଥା- ଶୈଳପୁତ୍ରୀ, ବ୍ରହ୍ମଚାରିଣୀ, ଚନ୍ଦ୍ରଘଣ୍ଟା, କୁଷ୍ମାଣ୍ଡ, ସ୍କନ୍ଦମାତା, କାତ୍ୟାୟିନୀ, କାଳରାତ୍ରି, ମହାଗୌରୀ ଏବଂ ସିଦ୍ଧଦାତ୍ରୀ । ଉକ୍ତ ନବ ରୂପକୁ ନବରାତ୍ର ପୂଜାର ମୁଖ୍ୟ ଭାବରେ

ଗ୍ରହଣ କରାଯାଏ । ଦକ୍ଷ ଯଜ୍ଞରେ ସ୍ୱାମୀଙ୍କ ନିନ୍ଦା ଅପମାନକୁ ସହ୍ୟ ନକରିପାରି ଶିବ (ଶଙ୍କରଙ୍କ) ଘରଣୀ ସତୀ ପତିବ୍ରତା ପାର୍ବତୀ ଯଜ୍ଞରେ ଝାସ ଦେବାରୁ ପର ଜନ୍ମରେ ହିମାଳୟ କନ୍ୟାରୂପେ ଜନ୍ମଗ୍ରହଣ କରିବାରୁ ତାଙ୍କ ନାମ ଶୈଳପୁତ୍ରୀ ରଖାଯାଇଥିଲା । ନାରଦଙ୍କ ପରାମର୍ଶ କ୍ରମେ ଦେବୀ କଠୋର ତପସ୍ୟା ଆଚରଣ କରିଥିବା ହେତୁ ତାଙ୍କ ନାମ ବ୍ରହ୍ମଚାରିଣୀ ଭାବେ ଖ୍ୟାତ । ଦେବୀଙ୍କର ମସ୍ତକରେ ଘଣ୍ଟା ସଦୃଶ ଅର୍ଦ୍ଧଚନ୍ଦ୍ର ଶୋଭା ପାଉଥିବାରୁ ତାଙ୍କୁ ଚନ୍ଦ୍ର ଘଣ୍ଟ କୁହାଯାଏ । ଦେବୀ ପାଣିକଖାରୁ ବଳୀକୁ ଭଲପାଉଥିବାରୁ ତାଙ୍କର ଅନ୍ୟ ନାମ କୁଷ୍ମାଣ୍ଡ, କାର୍ତ୍ତିକ (ସ୍କନ୍ଧ)ଙ୍କର ମାତା ପାର୍ବତୀ ହୋଇଥିବାରୁ ତାଙ୍କୁ ସ୍କନ୍ଧମାତା କୁହାଯାଏ । ଋଷି କାତ୍ୟାୟନଙ୍କ ଭକ୍ତି ନିଷ୍ଠା ବଳରେ ଦେବୀ ତାଙ୍କର କନ୍ୟା ହୋଇଥିବା ହେତୁ ତାଙ୍କୁ କାଳରାତ୍ରି କୁହାଯାଏ । କଠୋର ତପସ୍ୟାରେ ନିମଗ୍ନ ହେବା ହେତୁ ବର୍ଣ୍ଣ କଳା ହୋଇଯାଇଥିଲା । ତେଣୁ ଶିବ ଗଂଗାବାରିରେ ତାଙ୍କୁ ଧୌତ କରିବାରୁ ତାଙ୍କ ନାମ ମହାଗୌରୀ, ନବମ ଦିବସରେ ମାତା ଦୁର୍ଗା ଚରାଚର ବିଶ୍ୱବାସୀଙ୍କୁ ସିଦ୍ଧି ପ୍ରଦାନ କରୁଥିବାରୁ ତାଙ୍କ ନାମ ସିଦ୍ଧିଦାତ୍ରୀ ନାମେ ଖ୍ୟାତ ।

ଆଜି ଆମ୍ଭେମାନେ ମାଆଙ୍କୁ ଘରେଘରେ ପୂଜା କରୁ ଓ ବେଦୀ ମଣ୍ଡପରେ ବସାଇ ବହୁ ଆଡ଼ମ୍ବରରେ ତାଙ୍କ ପ୍ରତିମୂର୍ତ୍ତି ଆଗରେ ମଥାନତ କରୁ । କିନ୍ତୁ ସହୃଦୟତା ସହ ମନ ଖୋଲି ନ ଥାଉ । ଲୋକ ଦେଖାଣିଆ ପୂଜାର୍ଚ୍ଚନା ଆଜି ଏକ ଫେସନରେ ପରିଣତ ହୋଇଗଲାଣି । ଗାଁ' ଗାଁ'ରେ ମାଆଙ୍କ ମନ୍ଦିର କିନ୍ତୁ ଆଜିର ପୂଜା ଆରତି ଦ୍ୱାରା ଲୋକମାନେ ପ୍ରଭାବିତ ହେଉ ନଥିବାର ଲକ୍ଷ୍ୟ କରାଯାଉଛି । ନିଜର ସ୍ୱାର୍ଥ ପାଇଁ ସମସ୍ତେ ବ୍ୟାକୁଳ । ସମସ୍ତ ଦୁଃଖ ଯନ୍ତ୍ରଣାକୁ ଆମେ ମାଆଙ୍କ ମୁଣ୍ଡ ଉପରେ ଲଦି ଦେଇ ବିଲେଇ ଆଖି ବୁଜି କ୍ଷୀର ପିଇଲା ଭଳି ଅଲକ୍ଷ୍ୟରେ ଅନ୍ୟକୁ ଶୋଷଣ କରି ଧର୍ମକୁ ଆଖିଠାରୁ ମାରିଚାଲୁ । ଏହା ଆମ ପାଇଁ ଓ ଦେଶ ଜାତି ପାଇଁ ବହୁ କ୍ଷତି କାରକ ବୋଲି ଜାଣିଶୁଣି ଚେଇଁ ଶୋଇବାର ଅଭିନୟ କରିଚାଲୁ । ଏହି କୁକର୍ମରୁ ବିରତି ରହିବା ପାଇଁ ଶାରଦୀୟ ଦୁର୍ଗା ପୂଜାରେ ମା' ଦୁର୍ଗାଙ୍କର ପଦକମଳରେ ସମସ୍ତେ ଶପଥ ନେବା ।

ସର୍ବ ମଂଗଳ ମାଙ୍ଗଲ୍ୟେ ଶିବେ ସର୍ବାର୍ଥ ସାଧିକେ
ଶରଣ୍ୟେ ତ୍ର୍ୟମ୍ବିକେ ଗୌରୀ ନାରାୟଣୀ ନମୋସ୍ତୁତେ ।
ସର୍ବ ସ୍ୱରୂପେ ସର୍ବେଶେ ସର୍ବଶକ୍ତି ସମନ୍ୱିତେ
ଭୟେଭ୍ୟୋ ତ୍ରାହି ନୋ ଦେବୀ ଦୁର୍ଗେ ଦେବୀ ନମୋଽସ୍ତୁତେ ॥



# ମୁକ୍ତିର ପଥପ୍ରଦର୍ଶକ ସ୍ୱାମୀ

"ଅନେକ ଜନ୍ମ ତପବଳେ ମନୁଷ୍ୟ ଜନ୍ମ ମହୀତଳେ" । (ଭାଗବତ)

ସର୍ବ ଲୋଭନୀୟ ପଦାର୍ଥ ମଧ୍ୟରୁ କାମିନୀ ଓ କାଂଚନ ପ୍ରଧାନ । ଏହାକୁ ହାତେଇବା ପାଇଁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ନାଗ, ନର, ଅସୁର, ଗନ୍ଧର୍ବ, କିନ୍ନର ସମସ୍ତେ ବ୍ୟସ୍ତ । କଶ୍ୟପଋଷିଠାରୁ ତପସ୍ୱୀ, ରାଜସ୍ୱୀ ଓ ବ୍ରହ୍ମସ୍ୱୀ ପର୍ଯ୍ୟନ୍ତ ସମସ୍ତେ ପ୍ରାପ୍ତ ହେବା ଲାଳସାରେ କୁଳର ମର୍ଯ୍ୟାଦା ହୋଇଥିବାରୁ ସେମାନଙ୍କୁ ଆବଦ୍ଧରେ ରଖିବା ଉଚିତ୍ । କୁଳବଧୂ ପଦାକୁ ଗଲେ ତାକୁ କୁଳଟା ବୋଲାଯାଏ । କିନ୍ତୁ ଆଜିର ନାରୀ ଶିକ୍ଷାର ପ୍ରଚାର ଓ ପ୍ରସାର ସଶକ୍ତିକରଣ ଫଳରେ ଅନେକ ନାରୀ ସ୍ୱାଧୀନତା ନାମରେ ସ୍ୱେଚ୍ଛାଚାରିତାକୁ ଆପଣେଇ ନେଉଛନ୍ତି । ଏହା ସମାଜ ଓ ଦେଶ ପାଇଁ କଳଙ୍କ ତୁଲ୍ୟ । ନାରୀକୁ ବାଲ୍ୟାବସ୍ଥାରେ ପିତା, ଯୌବନରେ ପତି, ବାର୍ଦ୍ଧକ୍ୟ ପୁତ୍ର ସୁରକ୍ଷା ଦେଇଥାଏ । ଏଣୁ, କୁହାଯାଏ- କବିତା, ବନିତା, ଲତା ବିନାଶ୍ରୟେ ନିବର୍ତ୍ତନ୍ତି ।

ପିତା ରକ୍ଷତି କୌମାରେ ଭର୍ତ୍ତା ରକ୍ଷତି ଯୌବନେ
ରକ୍ଷତି ସ୍ଥବିରେ ପୁତ୍ରାଃ ନସ୍ତ୍ରୀ ସ୍ୱତନ୍ତ୍ର୍ୟ ମର୍ହତି ।- (ମନୁ)

ନାରୀ ବିବାହ ପୂର୍ବରୁ ପୁରୁଷ ସଂଗୀ ହେବା ଅନୁଚିତ୍ । ଯଦି ହୁଏ ତା'ର ସତୀତ୍ୱ ଯେପରି ନଷ୍ଟ ନହୁଏ ସେଥିପ୍ରତି ଯତ୍ନବାନ୍ ହେବା ଉଚିତ୍ । ନାରୀର ଶ୍ରେଷ୍ଠ ଧନ ଓ ଧର୍ମ ସତୀତ୍ୱ । ବିବାହ ପୂର୍ବରୁ ଏହା ଥରେ ଚୋରି ହେଲେ ଜୀବନସାରା ଦୁଃଖ, ଆଉ ଦୁଃଖ ।

କୋମଳ ଅବଳା ମନ ଘୃତର ସମାନ
ସୁତପ୍ତ ଅନଳ ପରି ପୁରୁଷର ମନ ।
ତେବେ ଘୃତ କୁମ୍ଭ ଆଉ ହୁତାଶନ
ଏକ ସଂଗେ ନରଖିବ କେବେ ବିଜ୍ଞ ଜନ ।
(ହିତୋପଦେଶ)

ନାରୀ ମାସକ ମଧ୍ୟରେ ଛଅଦିନ ଅପବିତ୍ର ଥାଏ । ଏହି ଦିନମାନଙ୍କରେ ତାଙ୍କୁ ସ୍ପର୍ଶ କରିବା ଅନୁଚିତ । ନାରୀ ପ୍ରଥମ ଦିନରେ ରଜୋବତୀ ହେବା ସମୟରେ ସ୍ପର୍ଶ କଲେ ବ୍ରହ୍ମ ହତ୍ୟା ପାତକ, ଦ୍ୱିତୀୟ ଦିନରେ ବାଳହତ୍ୟା ଦୋଷ, ତୃତୀୟ ଦିନରେ ଗୋ-ହତ୍ୟା ଦୋଷ, ଚତୁର୍ଥ ଦିନରେ ମାତୃହରଣ ଦୋଷ, ପଂଚମ ଦିନରେ ନିଜ ସୁକର୍ମ ନଷ୍ଟ ହୁଏ, ଷଷ୍ଠ ଦିନରେ ଶରୀର ରୋଗଗ୍ରସ୍ତ, ସପ୍ତମ ଦିନରେ ସ୍ପର୍ଶେ ଯଶ, ମାନ, ଗୌରବ ଓ କନ୍ୟା ସନ୍ତାନ ପ୍ରାପ୍ତି ହୋଇଥାଏ । ସପ୍ତବାର ମଧ୍ୟରେ ସୋମବାରରେ ରଜୋବତୀ ହେଲେ ପତିବ୍ରତା, ମଂଗଳବାରରେ ବେଶ୍ୟା, ବୁଧରେ ଧନ, ଜନ, କୀର୍ତ୍ତି, ଯଶ, ଗୁରୁବାରରେ ଗୋପଲକ୍ଷ୍ମୀ, ଶୁକ୍ରବାରରେ ପତିସୋହାଗିନୀ, ସନ୍ତାନପ୍ରାପ୍ତି, ଶନିବାରରେ ବନ୍ଧ୍ୟା ଓ ରବିବାରରେ ବିଧବା ଦୋଷ ଲାଗିଥାଏ । କିନ୍ତୁ କେତେକ କ୍ଷେତ୍ରରେ ଏହା ସମୟ, ଗ୍ରହ, ରାଶି, ନକ୍ଷତ୍ର, ଦେବପୂଜା ଓ ଗୁରୁଜନଙ୍କ ଆଶୀର୍ବାଦରୁ ଏହାର ବ୍ୟତିକ୍ରମ ଘଟିଥାଏ ।

ଶ୍ରୀକୃଷ୍ଣ ବୋଇଲେ ଯେବେ ଦେଲୁ ଯୋନି ଜନ୍ମ
ମାସକେ ଯୋନି ହୋଇବ ଶୁଦ୍ଧ କଲେ ସ୍ନାନ ।
ରୁଧିର ଧାର ଫୁଟିଣ ବିକାଶିବ ଖରେ
ପଦ୍ମ ବିକାଶିବ ତହୁଁ ଉଦର ମଧ୍ୟରେ ।
ପାର୍ବତୀ ବୋଇଲେ ଏହା ସହି ତ ନପାରି
ମାସକେ ରଜୋବତୀ ଯେ ହେଉଥିବ ନାରୀ ।
ପ୍ରଥମ ଦିନରେ ଯେ ଛୁଇଁବ ରଜୋବତୀ
ବ୍ରହ୍ମହତ୍ୟା ଦୋଷ ନିଶ୍ଚେ ହୋଇବ ତାହାରି ।
ଦ୍ୱିତୀୟ ଦିନରେ ଯେବେ କରିବ ରମଣ
ବାଳହତ୍ୟା ଦୋଷକୁ ଲଭିବ ତତ୍କ୍ଷଣ ।
ତୃତୀୟ ଦିନରେ ଯେ ରମିବ ରଜୋନାରୀ
ଗୋହତ୍ୟା ଦୋଷେ ଯେ ସେହୁ ପ୍ରତକ୍ଷେଣ କରି ।
ଚତୁର୍ଥ ଦିନରେ ରଜୋନାରୀ ଯେ ରମଇ

ଆୟୁଷ ତୁଟଇ ଶିରଚ୍ଛେଦ ତା'ର ଯାଇ ।
ପଂଚମ ଦିବସେ ଯେ ରମିବ ରଜୋ ନାରୀ
କଲା ଧର୍ମ ନାଶ ହୁଏ ତୁଟେ ତା'ର ଶିରୀ ।
ଷଷ୍ଠ ଦିବସରେ ଯେ ରମିବ ରଜୋବତୀ
ରୋଗୀ ଦେହ କ୍ଷୀଣ ପୁଣି ହୋଇବ ତାହାରି ।
ସପତମ ଦିନରେ ଯେ ରମିବ ସୁନ୍ଦରୀ
ଶିରୀ ଭୁଞ୍ଜଇ ସେ ଧର୍ମପୁତ୍ରେ ଅଧିକାରୀ ।
କାଳେ ନଛାଡ଼ଇ ତାକୁ ଦେବୀ ଯେ କମଳା
ସୁଲକ୍ଷଣ ପୁଂସ ସେ ଜାଣଇ ରତିକଳା । (ହରିବଂଶ)

ମୃତବ୍ୟକ୍ତିର ଘର ଦ୍ୱାଦଶ ରାତ୍ରି, ସୂତକରେ ଏକବିଂଶତି ରାତ୍ରି ଓ ସ୍ତ୍ରୀ ଅସ୍ପର୍ଶ ହେଲେ ସପ୍ତ ରାତ୍ରିରେ ଶୁଦ୍ଧ ହେବ । (ଅଚଳ ବୋଧାମୃତେ)

ଉଦକ୍ୟାଂ ବାଲଲଗ୍ନାଞ୍ଚ ସୂତିକା ନ୍ତ୍ୟାବସାୟିନଃ
ସ୍ପୃଷ୍ଟ୍ୱା ସାୟୀ ତ ଶୌଚାର୍ଥଂ ତଥୈବ ମୃତହାରିଣଃ ।
(ବ୍ରହ୍ମପୁରାଣ)

ଦିବାକୀର୍ତ୍ତି ମୁଦକ୍ୟାଞ୍ଚ ପତିତଂ ସୂତିକାଂ ତଥା
ଶବଂ ତତ୍ ସୃଷ୍ଟିନଂ ଚୈବ ସ୍ପୃଷ୍ଟ୍ୱା ସ୍ନାନେନ ଶୁଦ୍ଧ୍ୟତି । (ମନୁ)

ଚାଣ୍ଡାଳ, ସୂତିକା, ଶବ ଓ ରଜସ୍ୱଳା ନାରୀଙ୍କୁ ସ୍ପର୍ଶ କଲେ ସୁନିଶ୍ଚିତ ସ୍ନାନକରଣୀୟ ।

ଚାଣ୍ଡାଳ ସୂତକଶବାଂସ୍ତଥା ନାରୀଂ ରଜସ୍ୱଳାମ୍
ସ୍ପୃଷ୍ଟ୍ୱା ସ୍ନାୟାଦ୍ୱିଶୁଦ୍ଧ୍ୟର୍ଥଂ ତତ୍ ସୃଷ୍ଟ୍ୱାନ୍ ପତିତାଂସ୍ତଥା ।
(ଉଶନ୍‌ସ ସଂହିତା)

ଯେଉଁ ସ୍ତିରୀ ଗୋଟା ହୁଏ ପାକସ୍ୱରଶନ
ଯେବଣ ପୁରୁଷ ତାକୁ ଛୁଇଁତେ କରେ ମନ ।
ଲିଂଗଭଗ୍ନ ଦୋଷ ସେହୁ ପ୍ରାପତ ହୁଅଇ
ପିତୃଲୋକ ତା'ର ନର୍କରେ ପଡ଼ଇ ।
ଏମନ୍ତ ସ୍ତ୍ରୀ ଗୋଟାକୁ ହରଇ ଯେ ନର
ସେ ରଜ ପିତୃଲୋକ ତା'ର କରନ୍ତି ଆହାର ।
ହରିଲା ଲୋକ ଗୋଟା ସହଜେ ନାଶ ଯାଇ
କୋଷ୍ଠ ବ୍ୟାଧି ଗୋଟା ହୋଅଇ ଦେହ ଯେ ଛିଡ଼ଇ ।

ବୁଦ୍ଧି ହରାଇ ସେ ହୁଅଇ ମତିଭ୍ରମ
ଏମନ୍ତ ଲୋକକୁ ବାବୁ ଦଣ୍ଡୁଥାଇ ଯମ ।
(ମହାଭାରତ- ସଭାବିନୋଦ)

× × × × × ×

ସଭାରେ ବସିଣ ଯେ ମାନବ ମିଛ କହି
ଆଳସ୍ୟେ ପାଦ ନଧୋଇ ଯେ ଭୁଞ୍ଜି ବସଇ ।
କୁଷ୍ମାଣ୍ଡ ଫଳକୁ ଯେହୁ ରମଣୀ କଟାଇ
ଋତୁମତି ନାରୀ କି ଯେ ରମଣ କରଇ ।
କନ୍ୟା ତୁଳା ମାସେ ପିତୃ ଶ୍ରାଦ୍ଧ ନକରଇ
କଥା କହୁକହୁ ସବୁବେଳେ ଯେ ହସଇ ।
ଏମନ୍ତ ମନୁଷ୍ୟ ସଦା ବହୁ କଷ୍ଟ ପାଇ
ଆୟୁ ବୁଦ୍ଧି ନାଶଯାଏ ଅନ୍ନ ନ ମିଳଇ ।
ଗୁରୁବାର ଅମାବାସ୍ୟା ସଂକରାନ୍ତି ଦିନ
ରଜନୀରେ ସ୍ତ୍ରୀପୁରୁଷ କଲେକ ଭୋଜନ ।
କିବା ଏହି ତିନିଦିନ ଯେଉଁ ନାରୀ ମୋହେ
ପୁରୁଷ ସାଂଗରେ ମାତି ଧର୍ମକୁ ନଚାହେଁ ।
ପ୍ରାଣେ ନାଶ ନ କରିଣ ତାକୁ ଦୁଃଖ ଦେଇ
ବୁଲାନ୍ତି ଯେ ଅନ୍ନବସ୍ତ୍ର କାହିଁ ନ ମିଳଇ । (ଲକ୍ଷ୍ମୀପୁରାଣ)

ଋତୁର ପ୍ରଥମ ଦିନଠାରୁ ଷୋଡ଼ଶ ଦିନ ପର୍ଯ୍ୟନ୍ତ ସ୍ତ୍ରୀର ଗର୍ଭଧାରଣ ଶକ୍ତିଥାଏ । ଏହି ଦିନମାନଙ୍କରେ ରମଣ କରଣୀୟ । କିନ୍ତୁ ଋତୁର ଛଅଦିନ ପର୍ଯ୍ୟନ୍ତ ସହବାସ ବର୍ଜନୀୟ । ରବିବାର, ଅମାବାସ୍ୟା, ପୂର୍ଣ୍ଣିମା, ଚତୁର୍ଦ୍ଦଶୀ, ଅଷ୍ଟମୀ ଓ ସଂକ୍ରାନ୍ତିରେ ସହବାସ କରଣୀୟ ନୁହେଁ । ରାତ୍ରିର ଚତୁର୍ଥ ପ୍ରହର ଗର୍ଭଧାରଣରେ ଉପଯୁକ୍ତ ସମୟ । ପୁତ୍ର ଜାତ ପାଇଁ ଅଷ୍ଟମ, ଦଶମ, ଦ୍ୱାଦଶ ଓ ଚତୁର୍ଦ୍ଦଶ ଓ କନ୍ୟା ଜାତ ପାଇଁ ସପ୍ତମ, ନବମ, ଏକାଦଶ ଓ ତ୍ରୟୋଦଶବାର ଉତ୍ତମ ଅଟେ । ସାତବାର ମଧ୍ୟରୁ ସୋମବାର, ଗୁରୁବାର, ଶୁକ୍ରବାର ମୈଥୁନ ପାଇଁ ଉପଯୁକ୍ତ ହେଲେ ମଧ୍ୟ କେତେକ କ୍ଷେତ୍ରରେ ପୁରାଣମାନଙ୍କରେ ଗୁରୁବାରକୁ ନିବାରଣ କରାଯାଇଛି । ମଂଗଳବାର ମୈଥୁନରୁ ଜନ୍ମ ସନ୍ତାନ ମୃତ ହୋଇଥାଏ ।

ପୁତ୍ର ସନ୍ତାନ ପାଇଁ ଗର୍ଭର ଦୁଇମାସଠାରୁ ତିନିମାସ ମଧ୍ୟରେ ତିନିଗୋଟି ମୟୂର ଚନ୍ଦ୍ରିକାକୁ ଗୁଡ଼ ଭିତରେ ରଖି ଗିଳିଦେବ । ଏହା କୌଣସି ରବିବାର ଦିନ

ପ୍ରଭାତରୁ ଦକ୍ଷିଣ ନାସାରେ ନିଃଶ୍ୱାସ ଯିବା ସମୟରେ କରିବା ବିଧେୟ । ଏହିପରି ସୋମବାର ଓ ମଂଗଳବାର କରଣୀୟ । ଏହା ଅନ୍ୟ କୌଣସି ବ୍ୟକ୍ତିର ଅଗୋଚରରେ ହେବା ଉଚିତ୍ । ଖାଦ୍ୟରୂପେ ଗାଈକ୍ଷୀର, ଚିନି, ଅରୁଆ ଚାଉଳର ଭାତ, ପାଏସ୍ ଇତ୍ୟାଦି ଖାଇପାରିବେ । ଲୁଣ ଖାଇବା ଅନୁଚିତ୍ । ରାତ୍ର ଭୋଜନରୁ ଦୂରେଇ ରହିବା ଉଚିତ୍ ।

ଭାରିଯା ବିଭା ହୋଇ ନ ଅର୍ଜିଲେ ସୁତ
ସେହିମାନେ ମଲେ ଜାଣ ହୁଅନ୍ତିଟି ଭୂତ ।
(ପୁରାଣ)

ଋତୁକାଳାଭି ଗାମୀ ସ୍ୟାତ୍ ଯାବତ୍ ପୁତ୍ରୋନ୍ ଜାୟତେ ପୁତ୍ର ଯାତପର୍ଯ୍ୟନ୍ତ । ଋତୁକାଳରେ ସହବାସ କରଣୀୟ । ପୁତ୍ର ଜାତ ପରେ ଏହା ପରିତ୍ୟାଗ କରିବା ଉଚିତ୍ ।

ତିରିଶ ଦିନେ ସ୍ତ୍ରୀ ସଂଗ କରିବ ବେଳା ଋତୁମତ ଧରି
ଶୁଭାଶୁଭେ ପଦ୍ମେ ବୀଜ ଦାନ ଅମୃତ୍ ଯୋଗ ସୁମରି ।
ଋତୁମତରେ କିଛି ହିଁ ଦୋଷ ନାହିଁ ଗୃହଧର୍ମ ବୋଲାଇଲା
ଗୃହ କରିବାର ଉଚିତ୍ ପ୍ରମାଣ ବିହିତ କର୍ମକୁ କଲା ।
(ସ୍ମୃତିଚିନ୍ତାମଣି)

ଗୃହସ୍ଥାଶ୍ରମବାସୀମାନେ ନିଜ ଭାର୍ଯ୍ୟା ସହ ଯେଉଁ ସହବାସ କରନ୍ତି ତାକୁ ଗୃହସ୍ଥାଶ୍ରମବାସୀଙ୍କର ବ୍ରହ୍ମଚର୍ଯ୍ୟ କୁହାଯାଏ । ଏଥିରେ କୌଣସି ଦୋଷାବହ ନଥାଏ ।

ଋତାବୃତୌ ସ୍ୱଦାରେଷୁ ସଂଗତିର୍ଯ୍ୟା ବିଧାନତଃ
ବ୍ରହ୍ମଚର୍ଯ୍ୟଂ ତଦେବୋକ୍ତଂ ଗୃହସ୍ଥାଶ୍ରମ ବାସିନମ୍ ।
(ଗୀତାଯାଜ୍ଞ ବଲକ୍ୟମ୍)

ଋତୁର ଷଡ଼ଦିନ ପର୍ଯ୍ୟନ୍ତ ଦେବପୂଜା, ମାଂଗଳିକ ଶୁଭ କାର୍ଯ୍ୟ ଓ ପିତୃଦେବଙ୍କର ଶ୍ରାଦ୍ଧ ଉପାସନା, ବ୍ରତ ଓ ଦେବ ଦର୍ଶନ ଆଦି ବର୍ଜନୀୟ ।

ସପ୍ତାହାତ୍ ପିତୃଦେବାନାଂ ଭବେତ୍ ଯୋଗ୍ୟା ବ୍ରତାର୍ଚନେ
ସପ୍ତାହମଧ୍ୟେଂ ଯୋ ଗର୍ଭସ୍ତତ୍ସମ୍ଭୂ ତିର୍ନଳିମ୍ଳୁଚାଃ
ପୂର୍ବ ସପ୍ତକମୃତ୍ ସୃଜ୍ୟା ତା' ସୁ ଯୁଗ୍ମାସୁ ସଂବିଶେତ୍
ଷୋଡ଼ଶର୍ଭନିଶାଃ ସ୍ତ୍ରୀଣାଂ ସାମାନ୍ୟାତ୍ ସମୁଦାହୃତାଃ ।
(ଗରୁଡ଼ ପୁରାଣ)

ସୁଗୁଣବାନ ଧର୍ମପତ୍ନୀ ସଦା ନିଜ ପତି ପରମେଶ୍ୱରଙ୍କ ପଥ ଅନୁସରଣ କରି ସତ୍ୟ ଓ ଧର୍ମ ମାର୍ଗରେ ସନ୍ତାନ ପାଳନ କରିଥାନ୍ତି । ସା (ଭକ୍ତିଃ) ପରାନୁରକ୍ତିରୀଶ୍ୱର ।

ଗୃହଧର୍ମ ଯେତେ ଗୃହରେ ପାଳିବ କୁଟୁମ୍ବଯାକ ପାଳିବ
ସେବା ଭକ୍ତିରେ ପୁଣ୍ୟଫଳ ବଢ଼ିଲେ ପୁରୁଷେ ଉଦ୍ଧାର ହେବ ।

(ଭୀମ ଭୋଇ)

ଧର୍ମ ପତ୍ନୀ ପତି ଧର୍ମରେ ଆଶ୍ରୟ କରି ସର୍ବ କର୍ମ ସର୍ବ ଧର୍ମ ସନ୍ତୁଷ୍ଟ ନାଂ ଭବଃ । ସ୍ୱାମୀର ସ୍ନେହବୋଳା ମମତା ତା' ପାଇଁ ଅମୃତ । ଝାଟିମାଟି କୁଡ଼ିଆ ତା' ପାଇଁ ରାଜଉଆସ । ତା' ପାଇଁ ସ୍ୱାମୀ ପରମେଶ୍ୱର । ସେହି ନାରୀ ହିଁ ପୂଜ୍ୟ ।

ଯେଉଁ ସ୍ତ୍ରୀ ସାହାଯ୍ୟ କରେ ହରିଙ୍କ ସେବାରେ
ତାହାକୁ ପ୍ରକୃତ ପତ୍ନୀ କହନ୍ତି ଧରାରେ ।
ଗୃହବିଧି ସ୍ୱାମୀ ଧର୍ମେ ରତ ଯେ ରମଣୀ
ଜାଣିବ ସଂସାରେ ସେହୁ ପ୍ରକୃତ ଗୃହିଣୀ ।

(ମୋହ କୁଠାର)

ସତୀ ନାରୀ ସହିତ ସଂସ୍କାର କ୍ରିୟା କରଣୀୟ । ତା'ଠାରେ ସୁଖୀ ପୁତ୍ର, ପବିତ୍ର ଧର୍ମ ଧାରଣାରେ ବୀଜ ବପନ କଲେ ତା'ଠାରୁ ଉତ୍ପନ୍ନ ସନ୍ତାନ ପିତା, ମାତା, ଦେଶ, ଜାତି, ଭାଷା ଓ ସପ୍ତପୁରୁଷକୁ ନିଶ୍ଚୟ ଉଦ୍ଧାର କରେ ଏଥିରେ ଦ୍ୱିଧା ନାହିଁ । ନାରୀକୁ ବିଷ୍ଣୁ ଶକ୍ତି ଗର୍ଭକୁ ଧାରଣ ପାଇଁ ଯୋଗ୍ୟ କରିଥାନ୍ତି । ପ୍ରଜାପତି (ବ୍ରହ୍ମା) ଜୀବନ ଶକ୍ତି ସଂଚାର କରନ୍ତି । ଧାତା ଗର୍ଭକୁ ପୃଷ୍ଟ କରନ୍ତି । ସ୍ୱରସ୍ୱତୀ, ଚନ୍ଦ୍ର, ଆକାଶ ଓ ଅଶ୍ୱିନୀ କୁମାର ଗର୍ଭ ପୋଷଣ, ଦେହଗତ ଗର୍ଭଧାରଣ ଓ ଗର୍ଭର ରକ୍ଷା କବଚ ରୂପେ ସହାୟ ହୋଇଥାନ୍ତି ।

ବିଷ୍ଣୁର୍ଯୋନିଂ କଳ୍ପୟତୁତ୍ୱାଷ୍ଟା ରୂପାଣି ପିଂ ଶତୁ
ଆ ସିଂ ଚତୁ ପ୍ରଜାପତିର୍ଧାତା ଗର୍ଭଂ ଦଧାତୁତେ
ଗର୍ଭଂ ଧେହି ସେନୀ ବାଳି ଗର୍ଭ ଦେହି ସରସ୍ୱତୀ
ଗର୍ଭଂ ତେ ଅଶ୍ୱିନ୍ୟୈ ଦେବା ବା ଧର୍ତ୍ତାଂ ପୁଷ୍କରମୁଦ୍ରା
ହରିଣୀୟା ଅରଣୀ ଯଂ ନିର୍ମନ୍ଥତୋ ଅଶ୍ୱିନା
ତଂ ତେ ଗର୍ଭଂ ହବି ମହେ ପଶମେ ମାସିମ୍ୟତବେ । (ବେଦ)

ସପ୍ତଦିନରେ ଶୁଦ୍ଧ ସ୍ନାନ କରିସାରିଲେ କେବଳ ସ୍ୱାମୀ- ସ୍ତ୍ରୀ ରତି କରିବାକୁ ଋତୁ କୁହାଯାଏ । ରଜସ୍ୱଳା ହେବା ସାତଦିନ ମଧ୍ୟରେ ଯେଉଁ ଋତୁ କରାଯାଏ ତାହା ଅଋତୁ । ଅଋତୁ ମଧ୍ୟରେ ଶାଶୂ, ଶ୍ୱଶୁର, ସ୍ୱାମୀ ଓ ଗୁରୁଜନମାନଙ୍କୁ ଛୁଇଁବା ମନା । ଏହା ଗୃହ ଧର୍ମର ବିଧି ।

ନାରୀ ସଂଗମ ଋତୁମତେ, କେବଳ ପୁତ୍ର ଜନ୍ମ ଅର୍ଥେ
ଅନ୍ୟଥା ସୁଖ ରତିମତେ, ପ୍ରସଂଗ ନକରି ଏକାନ୍ତେ ।
ଜତିବର ସ୍ୱଧର୍ମ ଏ ବାଣୀ, ସକଳ ବେଦ ଶାସ୍ତ୍ରେ ଭଣି । (ଭାଗବତ)

ପୁତ୍ର ଜନ୍ମର ଛଅମାସ ପର୍ଯ୍ୟନ୍ତ ସ୍ତ୍ରୀ ସଂଗମରୁ ଦୂରେଇ ରହିବା ଉଚିତ୍ । ନଚେତ୍ ବ୍ରହ୍ମହତ୍ୟା, ମାତୃହରଣ ଓ ମହାପାତକ ଦୋଷ ଲାଗିଥାଏ । ଦାନ୍ତଉତ୍‌ଥାନ ପରେ ସହବାସ କରଣୀୟ ।

ଷଣ୍ମାସାନ୍ କାମୟେନ୍ନର୍ତ୍ତ୍ୟୋ ଗର୍ଭିଣୀ ମେବ ଚସ୍ତ୍ରୀୟମ୍
ଆଦାନ୍ତ ଜଦନାଦୂଦ୍ଧେ ଦ୍ୱିତୀୟଂ ମେବଂ ଧର୍ମୋ ବିଧୀୟତେ
ବ୍ରହ୍ମହା ପ୍ରଥମଞ୍ଚୈବ ଦ୍ୱିତୀୟଂ ଗୁରୁତଳ୍ପଗଃ
ତୃତୀୟନ୍ତୁ ମୁରାପୋତୟଂ ଚତୁର୍ଥଂ ସ୍ତେୟ ମୁଚ୍ୟତେ
ପାପାନାର୍ଥେଂବ ସଂସର୍ଗେ ପଂଚମଂ ପାତକଂ ମହତ୍ । (ଅତ୍ରି ସଂହିତା)

ନାରୀ ଯେତେବେଳେ ଅମୃତ ଭୋଜନ ପରଶେ ସେ ସମୟରେ ଦକ୍ଷିଣ ନାସିକାରେ ବାୟୁ ପ୍ରବାହିତ ହେଉଥିବା ସମୟରେ ଭୋଜନ ଗ୍ରହଣୀୟ । କିନ୍ତୁ ବାମ ନାସିକାରେ ବାୟୁ ପ୍ରବାହ ସମୟରେ ଶୟନ କରିବା ଉଚିତ୍ । ଯେକୌଣସି ଭୋଜନକୁ ଈଶ୍ୱରଙ୍କୁ ସମର୍ପଣ କରି ଭୋଜନ କରିବା ବିଧେୟ । ଆହାରକୁ ପର୍ଯ୍ୟାୟ କ୍ରମେ ଚାରି ଭାଗରେ ବିଭକ୍ତ କରାଯାଇଥାଏ । ଯଥା- ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ।

ଚର୍ବ୍ୟ: ଦନ୍ତ ଦ୍ୱାରା ଚର୍ବଣ କରି ଭକ୍ଷଣ କରିବାକୁ ଚର୍ବ୍ୟ କୁହାଯାଏ । ଯଥା- ନାରିକେଳ ।

ଚୋଷ୍ୟ: ରସ ଗ୍ରହଣ କରି ଯାହା ଫିଙ୍ଗାଯାଏ ତାହାକୁ ଚୋଷ୍ୟ କୁହାଯାଏ । ଯଥା- ଆଖୁ ।

ଲେହ୍ୟ: ଚାଟି କରି ଯାହା ଖିଆଯାଏ ତାହା ଲେହ୍ୟ । ଯଥା- ମହୁ ।

ପେୟ: ପାନୀୟ ରୂପେ ଯାହା ଖିଆଯାଏ ତାହାକୁ ପେୟ କୁହାଯାଏ । ଯଥା- ଦୁଗ୍ଧ, ଜଳ ।

ଉତ୍କଳର ପ୍ରତି ଘରେ ଘରେ ପୂଜାଯାଉଥିବା ଲକ୍ଷ୍ମୀପୁରାଣର ବର୍ଣ୍ଣିତ-

ଯେଉଁ ନାରୀ ସ୍ୱାମୀଠାରେ ରୋଷ ବହେ
ସ୍ୱାମୀ ଯାହା ବୋଲେ ତାହା ନକରେ କେବେ ହେଁ ।
ପରପୁରୁଷରେ ଯେହୁ ହୋଇଥାଏ ରତ
ପରିଷ୍କୃତ ନୋହି ହୁଏ ଯେ ନାରୀ କୁତ୍ସିତ ।

ଏମନ୍ତ ନାରୀଙ୍କ ମୁଖ ଲକ୍ଷ୍ମୀ ନଦେଖନ୍ତି
କାଂଗାଳିନୀ ହୋଇ ଦ୍ୱାର ଦ୍ୱାରା ସେ ବୁଲନ୍ତି ।

ଏଣୁ ଶୁଦ୍ଧ, ପୂତ୍ର, ପବିତ୍ର ଭାବରେ ରୋଷ କାର୍ଯ୍ୟ ସମାପନ କରି ସ୍ୱାମୀ, ସନ୍ତାନ, ଗୁରୁଜନମାନଙ୍କୁ ଆପ୍ୟାୟିତ କରିବା ଉଚିତ୍ ।

ସୁନାରୀ ବିବାହ ପାଇଁ ଆର୍ଯ୍ୟ ହିନ୍ଦୁ ସଂସ୍କୃତିରେ ସାଧାରଣତଃ ବ୍ରାହ୍ମ, ଦୈବ, ଆର୍ଯ୍ୟ, ପ୍ରଜାପତ୍ୟ, ଗନ୍ଧର୍ବ, ଆସୁର, ରାକ୍ଷସ ଓ ପୈଶାଚ, ବିବାହ କରାଯାଏ । ବିବାହ ଏକ ପବିତ୍ର ବନ୍ଧନ । ସାମାଜିକ ଶୃଙ୍ଖଳା ଏହାର ଲକ୍ଷ୍ୟ, ସୃଷ୍ଟିର ମଂଗଳ ଏହାର ପ୍ରଥମ ଆଦ୍ୟ ଗୀତ ଝଙ୍କାର ।

ଭବନ୍ତାଷ୍ଟେ ବିବାହଶ୍ଚ ବ୍ରାହ୍ମ ଦୈବାର୍ଯ୍ୟୟସ୍ତଥା
ପ୍ରଜାପ୍ରତ୍ୟଶ୍ଚ ଗାନ୍ଧର୍ବୋ ହ୍ୟାସ୍ୱରୋ ରାକ୍ଷସସ୍ତଥା
ପୈଶାଚଶ୍ଚାଷ୍ଟମ ସ୍ତ୍ୟାଜ୍ୟ ସ୍ତେଷାମର୍ଥଃ କ୍ରମୋଦିତଃ ।

ହିନ୍ଦୁ ସଂସ୍କୃତିରେ ଅବିବାହିତ ଯୁବକ ଓ ଯୁବତୀ ଅପବାଦକୁ ଗ୍ରହଣ କରନ୍ତି । ତା'ର ଚରିତ୍ରକୁ ସନ୍ଦେହ ଦୃଷ୍ଟିରେ ଦେଖାଯାଏ । କାରଣ ତା'ର ଚରିତ୍ର ସ୍ଖଳନ ହେବାର ବହୁ ସମ୍ଭାବନା ରହିଥିବାରୁ ଏକାଗ୍ରତାକୁ ସହଜରେ ଗ୍ରହଣ କରାଯାଇପାରେ ନାହିଁ । ବିବାହ ଦ୍ୱାରା ମାନସିକ ଓ ଆଧାତ୍ମିକ ଜୀବନରେ ବହୁ ଉନ୍ନତି ପରିଲକ୍ଷିତ ହୋଇଥାଏ । ମୈଥୁନ ଦ୍ୱାରା ନୂତନ ଜୀବନ ସୃଷ୍ଟି ହୁଏ ଓ ଅନେକ ରୋଗକୁ ଦମନ କରାଯାଇପାରେ । ବିବାହିତା ନାରୀର ମାତୃତ୍ୱ ଜୀବନ ସଫଳ ହୋଇଥାଏ । ଦୁଃଖ, ସୁଖର ସଂସାର ହସିଉଠେ ଓ ଈଶ୍ୱରଙ୍କ ସାନ୍ନିଧ ସହଜରେ ମିଳିପାରେ ବୋଲି ବିଶ୍ୱାସ କରାଯାଏ । ବ୍ୟକ୍ତିର ଆର୍ଥିକ ଉନ୍ନତି ଗୃହସ୍ଥାଶ୍ରମ ଦ୍ୱାରା ସ୍ୱାମୀ, ସ୍ତ୍ରୀ ଉଭୟ ଧର୍ମ, ଅର୍ଥ, କାମ ଓ ମୋକ୍ଷ ଚତୁର୍ବର୍ଗ ଫଳପ୍ରାପ୍ତି ପାଇଁ ବିବାହ ନିତାନ୍ତ ଆବଶ୍ୟକ । ଏକାଙ୍ଗ ଦ୍ୱାରା ଯାଗ, ଯଜ୍ଞ, ବିହିତ କର୍ମର   କର୍ମର ସୁଫଳ ମିଳିନଥାଏ । ଦାନ ଓ ଧାନ ପାଇଁ ବିବାହ ଗୁରୁତ୍ୱପୂର୍ଣ୍ଣ ଅଟେ ।

ବିବାହ ଦିନ ପୂର୍ବାହ୍ନି ସ୍ୱଗୃହମାନୟେଦ୍ ବରମ୍
ସ୍ଥିର ବ୍ରାହ୍ମେ ମୁହୂର୍ତ୍ତେ ଚାଳଂ କୃତୟାଃ ରୋତିବୈ
ଦାନଂ ତସ୍ମୈଚ କନପାୟା ବିବାହୋ ବ୍ରହ୍ମଉଚ୍ୟତେ ॥

ବ୍ରାହ୍ମ ବିବାହ- କର୍ତ୍ତା ବିବାହ ପୂର୍ବରୁ ବରକୁ ନିମନ୍ତ୍ରଣ କରି ପ୍ରଭାତରେ ନୂତନ ବସ୍ତ୍ର, ଅଳଙ୍କାର ଦେଇ କନ୍ୟାଦାନ ଦେବାକୁ ବ୍ରହ୍ମ ବିବାହ କୁହାଯାଏ । ଏହି ବିବାହ ଶୁଦ୍ଧ, ପ୍ରଶସ୍ତ ଓ ସର୍ବାଧିକ ହେଉଥିବାର ଦେଖାଯାଏ । ବିଦ୍ୱାନ ବରକୁ ଆମନ୍ତ୍ରଣ କରି କନ୍ୟାକୁ

ପ୍ରଦାନ କରାଯାଏ । ଶକ୍ତି ମୁତାବକ ଧନ, ରତ୍ନ, ବସ୍ତ୍ର, ଅଳଙ୍କାର, ଆସବାବପତ୍ର ପ୍ରଦାନ କରିଥାନ୍ତି । ଏହି ବିବାହ ପରମ୍ପରାଗତ ପବିତ୍ର ବନ୍ଧନ ।

**ଦୈବ ବିବାହ-** ଯଜ୍ଞ କରୁଥିବା ପୁରୋହିତଙ୍କୁ କନ୍ୟାଦାନ କରିବାର ନାମ ଦୈବ ବିବାହ । କନ୍ୟାକୁ ଏକ ବସ୍ତୁଭାବେ ଗ୍ରହଣ କରି ପୁରୋହିତଙ୍କୁ କନ୍ୟା ପ୍ରଦାନ କରାଯାଏ । ଏହି ପାଣିଗ୍ରହଣକୁ ଦୈବ ବିବାହ କୁହାଯାଏ ।

**ଆର୍ଯ୍ୟ ବିବାହ-** ବରଠାରୁ ଗୋ ମିଥୁନାଦି କିଛି ଗ୍ରହଣ କରି କନ୍ୟା ଦେବାର ନାମ ଆର୍ଯ୍ୟ ବିବାହ । ଋଷି ପରମ୍ପରାର ପୁରୋହିତ ଓ ଯଜ୍ଞପ୍ରିୟ ବ୍ରାହ୍ମଣ ମଧ୍ୟରେ ଏହି ବିବାହ ପ୍ରଚଳିତ ।

**ପ୍ରଜାପତ୍ୟ ବିବାହ-** ସାଂପ୍ରର୍ଥୀତ ହୋଇ ଯେଉଁ କନ୍ୟାଦାନ କରାଯାଏ ତାହାକୁ ପ୍ରଜାପତ୍ୟ ବିବାହ କୁହାଯାଏ ଏବଂ ସନ୍ତାନାଧିତି, ଧର୍ମାଚରଣ ସମ୍ମତ ପାଇଁ ବର ଓ କନ୍ୟା ଯେଉଁ ବିବାହ ବନ୍ଧନରେ ଆବଦ୍ଧ ରହନ୍ତି ତାହା ମଧ୍ୟ ପ୍ରଜାପତ୍ୟ ବିବାହ ଅଟେ ।

**ଗାନ୍ଧର୍ବ ବିବାହ-** ସ୍ତ୍ରୀ ଓ ପୁରୁଷ ଦୁହେଁ ଦେଶ କାଳାଦିର ନିୟମ ତ୍ୟାଗ କରି ପିତା ମାତା ଓ ସ୍ୱକୁଟୁମ୍ବୀମାନଙ୍କୁ ପରିତ୍ୟାଗ କରି କାମବଶତଃ ଯେଉଁ ସମ୍ଭୋଗ କରାଯାଏ ତାହାକୁ ଗାନ୍ଧର୍ବ ବିବାହ କୁହାଯାଏ ।

**ଆସୁର ବିବାହ-** ଯେଉଁ ବିବାହରେ କନ୍ୟା ତଥା ତା'ର ପରିବାରକୁ ଯଥାଶକ୍ତି ଧନ ପ୍ରଦାନ କରି ସ୍ୱଚ୍ଛନ୍ଦତା ପୂର୍ବକ କନ୍ୟାକୁ ବିବାହ କରାଯାଏ ଓ ଏଥିରେ କନ୍ୟାକୁ କ୍ରୟ କରାଯାଉଥିବାରୁ ଏହାକୁ ଆସୁର ବିବାହ କୁହାଯାଏ ।

**ରାକ୍ଷସ ବିବାହ-** କନ୍ୟାର ପରିବାର ଲୋକଙ୍କୁ କ୍ଷତ ବିକ୍ଷତ କରିବା, ମାରି ବଳପୂର୍ବକ କନ୍ୟାକୁ ଅପହରଣ କରି ବିବାହ କରିବାକୁ ରାକ୍ଷସ ବିବାହ କୁହାଯାଏ ।

**ପୈଶାଚ ବିବାହ-** ବଳ ପୂର୍ବକ ଓ ଅପହରଣ ଦ୍ୱାରା ଯେଉଁ ବିବାହ କରାଯାଏ ତାହାକୁ ପୈଶାଚ ବିବାହ କୁହାଯାଏ । ସବୁଠାରୁ ନିକୃଷ୍ଟ ଶୈଳୀର ବିବାହ ଏହା ଅଟେ । ଅଚେତନ ଅବସ୍ଥାରେ କନ୍ୟାକୁ ବଳତ୍କାର କରି ଉପଭୋଗ କରିବା ସହ ବିବାହ କଲେ ଏହା ପୈଶାଚ ବିବାହ ଅଟେ ।

କିନ୍ତୁ ବାଲ୍ୟବିବାହ ଘୋର ମହାପାପ ଓ ଦଣ୍ଡନୀୟ ଅପରାଧ ଅଟେ । ମାଂଗଳିକ କର୍ମ, ପବିତ୍ର ବିବାହ ମଂଗଳ ପ୍ରଦାନ କରୁଥିବା ସମୟରେ କାଳଜୟୀ ସମାଜ ସଂସ୍କାରକ ବଳରାମ ଦାସ ପ୍ରତି ପୁରରେ ନିଜର ସନ୍ଦେଶକୁ ପହଞ୍ଚାଇବାକୁ ଯାଇ ପ୍ରକାଶ କଲେ-

ଯେଉଁ ନାରୀ ସ୍ୱାମୀକି ଦେବତା ସମମଣି
ତୋଷ କରୁଥାଏ ନିତି ତା'ର ମତି ଚିହ୍ନି ।
ନିଜ ଅଂଗ ପରିଷ୍କାର କରି ଶୁଚି ହୁଏ
ସାନ ବଡ଼ ସମସ୍ତଙ୍କୁ ସମଭାବେ ଚାହେଁ ।
ପରଷିବାବେଳେ ପକ୍ଷପାତ ଯେ ନକରେ
ସ୍ୱାମୀ ପୁତ୍ର ସମସ୍ତଙ୍କୁ ବାଢ଼େ ସମାନରେ ।
ପତିର ଆଜ୍ଞାକୁ କେଭେ ନପକାଏ ତଳେ
ସ୍ୱାମୀ ଦୁଃଖେ ଦୁଃଖୀ ସୁଖେ ସୁଖୀ ହୋଇ ଚଳେ ।
ଏମନ୍ତ ନାରୀର ଗୃହ ଲକ୍ଷ୍ମୀ ନଛାଡ଼ନ୍ତି
ତା'ର ଦୁଃଖ ନୟନରେ କେବେ ନ ଦେଖନ୍ତି ।
ସଧବା ନାରୀର ପତି ବିନା ନାହିଁ ଗତି
ତପ ଜପ ଦେବପୂଜା ତାହାର ଅନୀତି ।
ପତିସେବା ଛାଡ଼ି ବୃଥା ବ୍ରତ ଯେ କରଇ
ଜନ୍ମ ଜନ୍ମାନ୍ତରେ ବାଲ୍ୟ ବିଧବା ହୁଅଇ ।

ଏ ବିଶ୍ୱ ବ୍ରହ୍ମାଣ୍ଡର ସମସ୍ତେ ଅଢ଼େଇ ଦିନର କୁଣିଆ । ହେ ସୁଜ୍ଞଜନେ ! ଏ ମାଟିଘଟ ଦିନେ ବା ଦିନେ ମାଟିରେ ମିଶିଯିବ । ପାଣି ଫୋଟକାରୁ କ୍ଷଣିକ ଏ ଜୀବନ ! ନିଜ କର୍ମଫଳ ନିଜକୁ ହିଁ ଏ ଧରାଧାମରେ ଭୋଗିବାକୁ ହେବ । ଭାଗ୍ୟକୁ ଦୋଷ ଦେଲେ ଚଳିବ ନାହିଁ । ପିତା, ମାତା, ଭାଇ, ଭଗ୍ନୀ, ପୁତ୍ର, କନ୍ୟା, ସ୍ତ୍ରୀ ଓ ବନ୍ଧୁବାନ୍ଧବ କେହି ଏଠି କାହାରି ନୁହେଁ । ସବୁ ମାୟାରେ ବାୟା ଓ ସ୍ୱାର୍ଥରେ ବନ୍ଧା । ଦୁଃଖରେ ପଡ଼ିଲେ ସଭିଏଁ ମୁହଁମୋଡ଼ି ଚାଲିଯିବେ । ଏହା ଚିରନ୍ତର ସତ୍ୟ ବୋଲି ମାନିନେବା ଉଚିତ୍ ।

ମର୍ତ୍ତ୍ୟ ମଣ୍ଡଳେ ଦେହ ବହି । ଦେବତା ହୋଇଲେ ମରଇ ।। (ଭାଗବତ)

ସମସ୍ତେ ସୁ-କର୍ମକୁ ଆପଣେଇନେବା ଉଚିତ୍ । ସତ୍ୟକୁ ଆଶ୍ରୟ କରି ସତ୍ୟପଥକୁ ଅନୁସରଣ କରିବା ଉଚିତ । ଏହାଦ୍ୱାରା ନିଜର ମଂଗଳ ହେବା ସହ ସଂସାରର ହିତ ସାଧନ ହୋଇଥାଏ ।

କେହି ରହିନାହିଁ ରହିବେ ନାହିଁ କେ ଭବରଂଗ ଭୂମିତଳେ
ସର୍ବେ ନିଜ ନିଜ ଅଭିନୟ ସାରି ବାହୁଡ଼ିବେ କାଳବଳେ ।

ସ୍ୱାମୀର ଅର୍ଥ ସଂକ୍ଷେପରେ କହିବାକୁ ଗଲେ ଭଗବାନ, ଯାହାଙ୍କୁ ସ୍ନେହ,

ଶ୍ରଦ୍ଧା ଓ ଭକ୍ତି ଦ୍ୱାରା ବାନ୍ଧି ରଖିହୁଏ ସେ ହିଁ ପରମପୂଜ୍ୟ ସ୍ୱାମୀ । ନାରୀ ପାଇଁ ତା'ର ସ୍ୱାମୀ ଭଗବାନ ସ୍ୱରୂପ । ସ୍ୱାମୀକୁ ସତ, ରଜ, ତମ ତ୍ରିଗୁଣଧାରୀ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ସ୍ୱରୂପରେ ଜ୍ଞାନ କରି ବନ୍ଦନା କରି ଚାଲିଲେ ନାରୀ ଜୀବନ ସାର୍ଥକ ହୋଇଥାଏ । ନାରୀ ହିଁ ନର୍କର ଦ୍ୱାର, ନାରୀ ହିଁ ମୋକ୍ଷର ଦ୍ୱାର, ସର୍ବ ସୁଖର ଆଧାର ସତୀନାରୀ । ନାରୀ କରେ ଘରକୁ ବୈକୁଣ୍ଠପୁର । ସେହି ନାରୀ କରିପାରେ ଘରକୁ ନର୍କର ସମାନ । ନାରୀ ହିଁ ସୁ-ଗୁରୁ । ସୁ-ପଥରେ ଯିବା ପାଇଁ ନାରୀ ହିଁ ପଥପ୍ରଦର୍ଶକ ଭାବରେ ଦଣ୍ଡାୟମାନ । ଏଣୁ ନାରୀ ପୂଜନୀୟା, ବନ୍ଦନୀୟା ଓ ମାଆର ସମାନ । ତା'ର ପାଦପଦ୍ମରେ ଶତକୋଟି ପ୍ରଣାମ ।

ସ୍ୱାମୀ ରମଣୀର ଅଟଇ ଏକା ଶ୍ରୀ ଭଗବାନ
ସେହି ନାରୀ ଗତି ଲଭଇ ଯାର ସ୍ୱାମୀରେ ମନ ।
ଜପ ତପ ତୀର୍ଥ ବରତ ସ୍ୱାମୀ ଅଟେ ନାରୀର
ଭଗବାନ ସର୍ବ ବ୍ୟାପକ ସ୍ୱାମୀ ହୃଦେ ତାହାର ।
× × × × ×
ପତି ହିଁ ନାରୀର ଦେବତା ପୁଣି ମୁକତିଦାତା
ସ୍ୱାମୀ ଅପରାଧୀ ରମଣୀ ହୁଏ ଶ୍ୱାନର ସୁତା ।

(ବାୟା ବାବା)





ଭାବ ସୀମାହୀନ । ସୃଜନଶୀଳ ମଣିଷ ଜଣେ
ତା' ଚିନ୍ତା ଚେତନାରେ ଭାସିଯାଏ
ଦିଗବିଦିଗ । ଡକ୍ଟର ରଣଜିତ୍ ପଣ୍ଡା ତାଂକ
ଆଧ୍ୟାତ୍ମିକ ଅନୁଶୀଳନରେ ସେହିପରି
ହେଇଛନ୍ତି ଅନନ୍ତ ପଥର ଯାତ୍ରୀ ।
ଭାବମୟତାରେ କେଉଁ ମହାସମୁଦ୍ରରେ
କରୁଛନ୍ତି ସନ୍ତରଣ । କେତେ ତରଂଗ, କେତେ
ତୀରରେ ସେ ଘୂରି ବୁଲନ୍ତି ପାଠକ ଉପଲବ୍ଧି
କରିବେ 'ଭାବ ସମୁଦ୍ର'ରେ ।

- ପ୍ରକାଶକ


ISBN 9789393178046
9 789393 178046